# ଜହ୍ନମାମୁଁ - କ୍ୟାମେଲ ରଙ୍ଗ ପ୍ରତିଯୋଗୀତା

## ପ୍ରବେଶିକା ଶୁଳ୍କ ବିହୀନ



**ପୁରସ୍କାର ହାସଲ କରନ୍ତୁ ।**

କ୍ୟାମେଲ — ୧ମ ପୁରସ୍କାର ଃ ୧୫
କ୍ୟାମେଲ — ୨ୟ ପୁରସ୍କାର ଃ ୧୦
କ୍ୟାମେଲ — ୩ୟ ପୁରସ୍କାର ଃ ୫
କ୍ୟାମେଲ — ୫ ଗୋଟି ସାନ୍ତ୍ୱନା ଦାୟକ ପୁରସ୍କାର
କ୍ୟାମେଲ — ୧୦ ଗୋଟି ପ୍ରମାଣ ପତ୍ର ।

ଏଠୁ ବ୍ୟାପାଆଁଡ଼ା ଭାଗକୁ ପାଖ ଭେଦ କାଟନ୍ତୁ ।

ଏଥିରେ କେବଳ ୧୨ ବର୍ଷ ବୟସ ପର୍ଯ୍ୟନ୍ତ ଛାତ୍ରମାନେ ଅଂଶ ଗ୍ରହଣ କରିପାରିବେ । ପୂର୍ବରେ ଥିବା ଛବିକୁ ଯେ କୌଣସି କ୍ୟାମେଲ ରଙ୍ଗରେ ରଙ୍ଗୀନ କରନ୍ତୁ । ଆପଣଙ୍କର ରଙ୍ଗୀନ ଛବିକୁ ନିମ୍ନ ଠିକଣାରେ ପଠେଇ ଦିଅନ୍ତୁ । **P.B. No. 9928,** COLABA, Bombay-400 005.

ଏହାରି ଫଳାଫଳ ବୃତ୍ତାନ୍ତ ଏବଂ ଏଥି ସମ୍ବନ୍ଧୀୟ କୌଣସି ଚିଠିପତ୍ର ବିଚାରକୁ ନିଆଯିବ ନାହିଁ ।

Name. ______________________ Age ______________________

Address. ______________________________________________

ଆପଣଙ୍କ ନାମ ଓ ଠିକଣା ଇଂରାଜୀରେ ଲେଖନ୍ତୁ

ଦସ୍ତଖତ ସଂପୂର୍ଣ୍ଣ ଚିତ୍ର ପେଣ୍ଟିଂ ହେବାପ୍ରତି ଧ୍ୟାନ ରଖନ୍ତୁ ।

ଏହା ପଠାଇବାର ଶେଷ ତାରିଖ ଃ *31-5-1980*

**CONTEST NO.14**

Vision



# ଜହ୍ନମାମୁଁ

ମେ ୧୯୮୦



## ବିଷୟ-ସୂଚୀ








# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'

ସଞ୍ଚାଳକ : ନାଗିରେଡ୍ଡୀ

---

ଅସହିଷ୍ଣୁତା ଓ ଅହେତୁକ ସନ୍ଦେହ ଯୋଗୁ ସମାଜରେ ବହୁତ ଅଶାନ୍ତି ଉପୁଜିଥାଏ । ଅମୁକ ଲୋକ ଖରାପ ହୋଇ-ଥିବ ବୋଲି ଧରିନେଇ ତାହା ପ୍ରତି ଖରାପ ବ୍ୟବହାର କରିବା ବୁଦ୍ଧିମାନ୍‌ର କାମ ନୁହେଁ । ଏ ସଂଖ୍ୟାର ବେତାଳ କଥାରେ ଏହି କଥା ସୂଚାଇ ଦିଆଯାଇଛି ।

## ଅମରବାଣୀ

ଇହ ଯତ୍ କ୍ରିୟତେ ତତ୍ତୁ ପରତ୍ରୈବୋପଭୁଜ୍ୟତେ ।
ସିକ୍ତମୂଲସ୍ୟ ବୃକ୍ଷସ୍ୟ ଫଲଂ ଶାଖାସୁ ଦୃଶ୍ୟତେ ॥



ଭଲକାମର ଫଳ ସଙ୍ଗେ ସଙ୍ଗେ ଆଖି ଆଗରେ ଦୃଷ୍ଟ ନ ହେଲେ ବି ଅନ୍ୟତ୍ର ହେବହିଁ ହେବ । ଗଛ ମୂଳରେ ପାଣି ଦିଆହୁଏ । କିନ୍ତୁ ତା'ର ସୁପରିଣାମ ଶାଖାଗ୍ରରେ ଫଳ ରୂପେ ଦେଖା ଦିଏ ।

---

ବର୍ଷ : ୧୩ ମେ ୧୯୮୦ ଅଙ୍କ : ୧୧

ପ୍ରତିସଂଖ୍ୟା ଟ୧.୫୦ ବାର୍ଷିକ ମୂଲ୍ୟ : ଟ୧୮.୦୦










**ପ୍ରଶ୍ନ : ଇଂରାଜୀ ଭାଷାରେ ଲିଖିତ ଶିଶୁମାନଙ୍କ ସକାଶେ ସବୁଠାରୁ ଚିତ୍ତାକର୍ଷକ ଦଶଗୋଟି ବହିର ନାମ ଦେବେ କି ?**

ଉତ୍ତର : ଏଭଳି ଏକ ତାଲିକା ପ୍ରସ୍ତୁତ କରିବା କଷ୍ଟସାଧ୍ୟ ବ୍ୟାପାର । ସେ ଯାହାହେଉ, ସମଗ୍ର ଇଂରାଜୀ ସାହିତ୍ୟ ଉପରେ ଦୃଷ୍ଟିପାତ କରି ଆମ୍ଭେମାନେ ଦଶଗୋଟି ଚିତ୍ତାକର୍ଷକ ବହିର ନାମ ଦେଉଛୁ ।

ଏ ତାଲିକାରେ ପରୀକାହାଣୀମାନ, ପ୍ରଥମେ ଅନ୍ୟ ଭାଷାରେ ଲେଖା ହୋଇ ପରେ ଇଂରାଜୀକୁ ଅନୂଦିତ ହୋଇଥିବା ବହିମାନ ଅନ୍ତର୍ଭୁକ୍ତ ନୁହନ୍ତି । ପୁଣି ବିଖ୍ୟାତ ହେଲେ ବି ଯେଉଁ ସବୁ ରଚନା ବହି ହେଲା ଭଳି ଦୀର୍ଘ ନୁହନ୍ତି, ସେସବୁ ମଧ୍ୟ ଏଥିରୁ ବାଦ୍ ଦିଆଯାଇଛି । ଯଥା : ଚସରଙ୍କ କ୍ୟାଣ୍ଟରବାରି ଟେଲ୍‌ସ୍‌ର ଗଳ୍ପମାନ, ଏଡ୍‌ୱାର୍ଡ୍ ଲିଅରଙ୍କ ଲିମାରିକ୍, କିମ୍ବା ପାଇଡ୍‌ପାଇପାର୍ ଅବ୍ ହ୍ୟାମ୍‌ଲିନ୍ ଭଳି କବିତା ।

ଏ ତାଲିକାରେ ପୁଣି ଏପରି ବହି ଅନ୍ତର୍ଭୁକ୍ତ, ଯାହା ଶିଶୁଙ୍କ ସକାଶେ ଲେଖା ହୋଇ ନ ଥିଲେ ବି ଶିଶୁ ସମାଜରେ ଅତ୍ୟନ୍ତ ଜନପ୍ରିୟତା ଲାଭ କରିଛି । (ଲେଖକଙ୍କ ନାମ ଓ ବହିର ପ୍ରଥମ ପ୍ରକାଶ କାଳ ବନ୍ଧନୀରେ ଦିଆଯାଇଛି ।)

ତାଲିକା : ଏଲିସେସ୍ ଆଡ୍‌ଭ୍ୟାଞ୍ଚର୍ ଇନ୍ ୱାଣ୍ଡରଲ୍ୟାଣ୍ଡ (ଲୁଇ କ୍ୟାରୋଲ୍-୧୮୬୫); ରବିନ୍‌ସନ୍ କ୍ରୁଶୋ (ଡାନିଏଲ୍ ଡେଫୋ-୧୭୧୯); ଦ ଆଡ୍‌ଭ୍ୟାଞ୍ଚର୍ସ ଅବ ଟମ୍ ସୟେଆର୍ (ମାର୍କ ଟ୍ୱାଇନ୍-୧୮୭୬); ବ୍ଲାକ୍ ବିଉଟି (ଆନ୍ନା ସିଓ୍ୱେଲ୍- ୧୮୭୭); ଦ ପିଲ୍‌ଗ୍ରିମ୍‌ସ୍ ପ୍ରୋଗ୍ରେସ୍ (ଜନ୍ ବୁନିଆନ୍-୧୬୭୮); ଗାଲିଭର୍ସ ଟ୍ରାଭେଲ୍‌ସ୍ (ଜୋନାଥନ୍ ସୁଇଫ୍ଟ-୧୭୨୬); ଅଙ୍କଲ୍ ଟମସ୍ କ୍ୟାବିନ୍ (ହାରିଏଟ୍ ବିଚର ଷ୍ଟୋ-୧୮୫୨); ଦ ଟ୍ରେଜାର୍ ଆଇଲ୍ୟାଣ୍ଡ (ଆର୍.ଏଲ୍.ଷ୍ଟିଭେନ୍‌ସନ୍ ୧୮୮୩); ଦ ୱାଟାରବେବିଜ୍ (ସି. କିଙ୍ଗ୍‌ସ୍‌ଲେ-୧୮୬୩), କ୍ରିସ୍‌ମାସ୍ କ୍ୟାରୋଲ୍ (ଚାର୍ଲସ୍ ଡିକେନ୍‌ସ୍-୧୮୪୩)




ରାଜା ତାଙ୍କର ଅଦ୍ଭୁତ କନ୍ୟାସନ୍ତାନ ଜାତ ହେବାର ଦେଖି ପଣ୍ଡିତମାନଙ୍କୁ ଡକାଇ ସେମାନଙ୍କ ପରାମର୍ଶ ଲୋଡ଼ିଲେ ।

ପଣ୍ଡିତମାନେ ନିଜ ନିଜ ଭିତରେ ଆଲୋଚନା କରି କହିଲେ, "ମହାରାଜ ! ଅମଙ୍ଗଳର ଅନେକ ଲକ୍ଷଣ ରହିଛି । ତିନିସ୍ତନଯୁକ୍ତା କନ୍ୟା ନିଶ୍ଚେ ଅଶୁଭସୂଚକ । ଆପଣ ସେ କନ୍ୟା ପ୍ରତି ଥରେ ମଧ୍ୟ ଦୃଷ୍ଟିପାତ କରନ୍ତୁ ନାହିଁ । ତାକୁ ଗୋଟାଏ ଅଲଗା ମହଲ ଭିତରେ ରଖନ୍ତୁ । ଯେତେବେଳେ ସେ ବିବାହଯୋଗ୍ୟା ହେବ, ସେତେବେଳେ ତାକୁ ଯିଏ ବିଭା ହେବାକୁ ଆଗଭର ହେବ, ତା' ସହ ବିଭା କରିଦେଇ ବରକନ୍ୟା ଉଭୟଙ୍କୁ ଦେଶରୁ ବିଦା କରିଦେବେ । ଏହାହିଁ ଆପଣଙ୍କ ପକ୍ଷରେ ବର୍ତ୍ତମାନ ପନ୍ଥା ।"

ରାଜା ତାହାହିଁ କଲେ । କେତେ ବର୍ଷ ବିତିଗଲା । ରାଜା ରାଜକନ୍ୟାଙ୍କ ବିବାହ ଦେବାକୁ ମନସ୍ଥ କରି ଏହି ଘୋଷଣା କଲେ ଯେ ଯିଏ ରାଜକନ୍ୟାଙ୍କୁ ବିବାହ କରିବ, ତାକୁ ଲକ୍ଷେ ସ୍ୱର୍ଣ୍ଣମୁଦ୍ରା ମିଳିବ, କିନ୍ତୁ ସେ ସସ୍ତ୍ରୀକ ରାଜ୍ୟ ଛାଡ଼ି-ଚାଲିଯିବା ଦରକାର ।

ଏକ ଲକ୍ଷ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ମିଳିବାର ଘୋଷଣା ସତ୍ତ୍ୱେ କୌଣସି ଯୁବକ ରାଜକୁମାର ପାଣିଗ୍ରହଣ ସକାଶେ ଆଗଭର ହେଲେ ନାହିଁ । କାରଣ ତା' ଦୈହିକ ଅସ୍ୱାଭାବିକତା ବିଷୟରେ ସମସ୍ତେ ଶୁଣିଥିଲେ । ତାକୁ ବିବାହ କରିବା ଅର୍ଥ ମୃତ୍ୟୁ ବରଣ କରିବା ବୋଲି ସମସ୍ତେ ବିଶ୍ୱାସ କରୁଥିଲେ ।

ଦିନେ ସହର ଭିତରକୁ ଆସିଥିବା ଅନ୍ଧଟାଏ ସେ ଘୋଷଣା ଶୁଣିଲା । ଅନ୍ଧକୁ ବାଟ କଢ଼ାଇ ଆଣିଥାଏ ଜଣେ କୁଜା ।



ଅନ୍ଧ କୁଜାକୁ କହିଲା, "ଭାଇ, ମୋତେ ସେ ଢେଙ୍ଗୁରା ପିଟୁଥିବା ଲୋକ ପାଖକୁ ନେଇଚାଲ । ରାଜକନ୍ୟାକୁ ବିଭା ହେବା ସକାଶେ ମୋର ଆପତ୍ତି ନାହିଁ । ରାଜକନ୍ୟା କୁରୂପା ହେଉ, ସୁରୂପା ହେଉ, ମୁଁ ତ ଅନ୍ଧ । ତାକୁ ଦେଖି-ପାରିବି ନାହିଁ । ଏଣେ ଲକ୍ଷେ ସ୍ୱର୍ଣ୍ଣମୁଦ୍ରା ମିଳିଲେ ଆରାମରେ ରହିବି । ଯଦି ମରିବାକୁ ହେବ, ତେବେ ବି ଚିନ୍ତା ନାହିଁ । ମୋ ଜୀବନରେ କେଉଁ ସୁଖ ଅଛି ଯେ ମରିବାକୁ ଡରିବି ? ବରଂ କିଛିଦିନ ସୁଖଭୋଗ କରି ମରିଯିବା ଶ୍ରେୟସ୍କର ।"

କୁଜା ଅନ୍ଧକୁ ଘୋଷଣାକାରୀ ପାଖକୁ ନେଇ-ଗଲା । ଅନ୍ଧ ତାକୁ କହିଲା, "ବାବୁ, ଯଦି ରଜା ମୋତେ କନ୍ୟା ଦେବାକୁ ଆପତ୍ତି କରିବେ ନାହିଁ, ତେବେ ମୁଁ ରାଜ-ଜାମାତା ହେବାକୁ ପ୍ରସ୍ତୁତ !"

ଘୋଷଣାକାରୀ ଦେଖିଲା କେହି ତ ତା' ଘୋଷଣାରେ କର୍ଣ୍ଣପାତ କରୁନାହାନ୍ତି । ତେଣୁ ସେ ଅନ୍ଧକୁ ରଜାଙ୍କ ପାଖକୁ ନେଇଗଲା ।

ରଜା ଦୀର୍ଘସମୟ ଅନ୍ଧଆଡ଼କୁ ଅନାଇ ରହି କହିଲେ, "ଭାଗ୍ୟରେ ଯାହା ଅଛି, ତାକୁ କିଏ ବଦଳାଇବ ? ହେଉ, ଯଦି ଆଉ କେହି ଆଗ-ଭର ନ ହେବା ସ୍ଥଳେ ଏ ଅନ୍ଧ ପୁଅଟି ଆସିଛି, ତେବେ ଏହାକୁହିଁ କନ୍ୟାଦାନ କରାଯାଉ !"

ପାରିଷଦବର୍ଗ ଅନ୍ଧକୁ ସ୍ନାନ କରାଇଲେ; ଦୁର୍ମୂଲ୍ୟ ବସ୍ତ୍ର ପିନ୍ଧାଇଲେ । ତା'ପରେ ଯଥାବିଧି ରାଜକନ୍ୟା ସହ ତା'ର ବିବାହ ହୋଇଗଲା । ରଜା ତା' ହାତରେ ଏକ ଲକ୍ଷ ସ୍ୱର୍ଣ୍ଣମୁଦ୍ରା ଅର୍ପଣ କଲେ । ନଗରୀ ସୀମାରେ ନଈ । ସେପାରିରେ ଅନ୍ୟ ରାଜ୍ୟ । ବରକନ୍ୟାଙ୍କୁ ନୌକାରେ ବସାଇଦିଆଗଲା । ସାଥିରେ ବସିଲା କୁଜା । ନାଉରି ସେମାନଙ୍କୁ ନଈପାରି କରାଇ-ଦେଇ ନୌକା ଫେରାଇ ନେଇଆସିଲା ।

ସେମାନେ ଗୋଟିଏ ଶଗଡ଼ ଭଡ଼ା କରି ଯାଇ କେତେଦିନ ପରେ ଗୋଟିଏ ବଡ଼ ନଗରୀରେ ପହଞ୍ଚିଲେ । ସେଠାରେ କୋଠାଟିଏ ନେଇ ରହିଲେ । ଅନ୍ଧ ମନଇଚ୍ଛା ଖିଆପିଆ କରୁଥାଏ ।

କୁଜା ଘରର ସବୁ ବୁଝାବୁଝି କରୁଥାଏ ।

କ୍ରମେ କୁଜା ସହ ରାଜକନ୍ୟାର ଭାବ ହେଲା । ରାଜକନ୍ୟା ଦିନେ କୁଜାକୁ କହିଲା, "ଏ ଅନ୍ଧ-ଟାକୁ ଭରଣପୋଷଣ କରି ଲାଭ କ'ଣ ? ଏ ଜଞ୍ଜାଳକୁ ଇହଧାମରୁ ବିଦା କରିଦେବା ଭଲ । କିଛି ବିଷ ଆଣ ।"

"ବାଃ, ତୁମେ ବାସ୍ତବିକ ବଡ଼ ବୁଦ୍ଧିମତୀ ଦେଖୁଛି !" କୁଜା ଖୁସୀ ହୋଇ କହିଲା ।

କୁଜା ବିଷ ସନ୍ଧାନରେ ବାହାରି ବୁଲିବୁଲି କରି ଗୋଟାଏ ସ୍ଥାନରେ ନାଗ ସାପଟାଏ ମରି ପଡ଼ିଥିବାର ଦେଖିଲା । ତାକୁ ଗୋଟାଇଆଣି ସେ ରାଜକନ୍ୟାକୁ ଦେଇ କହିଲା, "ଏହାକୁ କଟାକଟି କରି ତରକାରି ରାନ୍ଧିଦିଅ । ଅନ୍ଧ ମାଛ ଖାଇବାକୁ ଭାରି ଭଲ ପାଏ । ଏହାକୁ ମାଛ ମନେକରି ଆନନ୍ଦରେ ଖାଇବ ତା' ପରେ ତ ପଞ୍ଚତ୍ୱ ପ୍ରାପ୍ତି ।"

ଦୁହେଁ ପରସ୍ପର ଅନାଇ ବହୁତ ହସିଲେ । "ବିଚରା ଅନ୍ଧ ଆଜି ମରିବ । ତେଣୁ ତାକୁ ଦୁଇ ଚାରି ପ୍ରକାର ତିଅଣ ଭଲ ଭାବରେ ରନ୍ଧାରନ୍ଧି କରି ପରଷିବ ।"

ଏହି ନିର୍ଦ୍ଦେଶ ଦେଇ କୁଜା କୌଣସି କାମରେ ବାହାରିଗଲା ।

ରାଜକନ୍ୟା ସାପକୁ କଟାକଟି କରି ଚୂଲିରେ ବସାଇଦେଇ ଅନ୍ଧକୁ କହିଲା, "ତୁମ ପାଇଁ ମାଛ ତରକାରି ରାନ୍ଧୁଛି । ମୁଁ ଯାଇ ତଳୁ ପାଣି ନେଇଆସେ । ତୁମେ ଏ ଚୂଲି ପାଖରେ ବସି



କରଚୁଲି ସାହାଯ୍ୟରେ ମାଛତକ ଏପଟସେପଟ କରୁଥାଅ ।"

"ଆହା ! ରାଜକନ୍ୟା ହୋଇ ମଧ୍ୟ ମୋ ସ୍ତ୍ରୀ ମୋ ସକାଶେ କେଡ଼େ ସରାଗରେ ରନ୍ଧାରନ୍ଧି କରୁଛି ! ମୋର ଅନ୍ଧ ହେବା ସାର୍ଥକ ହେଲା । ଅନ୍ଧ ହୋଇ ନ ଥିଲେ କି ରାଜକନ୍ୟା ମୋ ପ୍ରତି ଏଡ଼େ ସହାନୁଭୂତି ଦେଖାନ୍ତା ! ଆଉ କୁଜା ଭଳି ବନ୍ଧୁ ବି ଭାଗ୍ୟରେ ଥିଲେ ମିଳେ ! ମୋର ଯାହା ଖାଇବାକୁ ମନ, ସେ ସବୁ ଯୋଗାଡ଼ କରି ଆଣୁଛି ।" ଅନ୍ଧ ମନେ ମନେ ଭାବିଲା ।

ଅନ୍ଧ ଅତି ଖୁସି ହୋଇ ଚୁଲି ପାଖରେ ବସିଲା ଓ ସାପଖଣ୍ଡମାନ ଏପଟସେପଟ କଲା । ସେ ନାଗବିଷର ମହିମା ଏମିତି ଯେ ତା' ଧୂଆଁ ଆଖିରେ ଲାଗି ସେ ଅନ୍ଧ ହୃତ ଦୃଷ୍ଟିଶକ୍ତି ଫେରି-ପାଇଲା ।

ତା' ଆନନ୍ଦ କହିଲେ ନ ସରେ । କିନ୍ତୁ ଚୁଲିରେ ବସିଥିବା ଶଜ ଉପରେ ଆଖି ପଡ଼ିବା ମାତ୍ରେ ସେ ଚମକି ଉଠିଲା । ମାଛ ବୋଲି ରାଜକନ୍ୟା ଯାହାକୁ କହୁଥିଲା, ସେ ତ ସାପ ! କ୍ରମେ ତା'ର ସନ୍ଦେହ ହେଲା, ରାଜକନ୍ୟା ଏବଂ କୁଜା ହୁଏତ ତାକୁ ମାରିବାର ଚକ୍ରାନ୍ତ କରୁ-ଥିଲେ । ଅସଲ କଥା ଜାଣିବା ଲୋଡ଼ା । ସେ ତେଣୁ ପୂର୍ବ ଭଳି ଅନ୍ଧ ଥିବାର ଛଳନା କରି ବସିରହିଲା ।

କୁଜା ଓ ରାଜକନ୍ୟା ଫେରିଆସି ପରସ୍ପର ଏମିତି ବ୍ୟବହାର କଲେ, ତାହା ଦେଖି ଅନ୍ଧ ବୁଝିଲା ଯେ ତା' ସନ୍ଦେହ ସତ୍ୟ । ସେ କୁଜାକୁ ଆଘାତ କରିବା ପାଇଁ ହାତ ପାଖରେ କୌଣସି ଅସ୍ତ୍ର ନ ପାଇ ତାକୁ ଶୂନ୍ୟକୁ ଟେକି ବୁଲାଇ ବୁଲାଇ ରାଜକନ୍ୟା ଉପରକୁ ଫୋପାଡ଼ିଦେଲା । ଫଳ ହେଲା ବିଚିତ୍ର । ରାଜକନ୍ୟାର ତୃତୀୟ ସ୍ତନ ଦବିଯାଇ ଅଦୃଶ୍ୟ ହୋଇଗଲା । ଆଘାତରେ କୁଜାର କୁବ୍ଜ ମଧ୍ୟ ଭଲ ହୋଇଗଲା !





# ଭଲ୍ଲୁକ ତାନ୍ତ୍ରିକ

[ ୨୧ ]

[ରବିବର୍ମା ସୁଡ଼ଙ୍ଗରେ ପ୍ରବେଶ କରି ବୈରାଗୀମାନଙ୍କ ପାଖରୁ ନିଜର ହୃତ ମନ୍ତ୍ରଦଣ୍ଡଟି ପୁନରୁଦ୍ଧାର କଲେ । ସମସ୍ତେ ସୁଡ଼ଙ୍ଗର ଅନ୍ୟ ପ୍ରାନ୍ତରେ ବାହାରି ଦେଖନ୍ତି ତ ସେମାନେ ରାଜା ଜିତକେତୁଙ୍କ ଉଦ୍ୟାନରେ ପହଞ୍ଚିଯାଇଛନ୍ତି । ସେତିକବେଳେ ରାଜା ଓ ମାୟାମର୍କଟ ଆସି ସେଠାରେ ଉପସ୍ଥିତ ହେଲେ । ରାଜାଙ୍କ ପ୍ରଶ୍ନରେ ଗୁରୁଭୈରବ କୌଣସି ସଙ୍ଗତ ଉତ୍ତର ନ ଦେଇ କେବଳ "ମନ୍ତ୍ରଦଣ୍ଡ !" "ଶ୍ୟାମଗୁପ୍ତ !" ଚିତ୍କାର କରିବାକୁ ଲାଗିଲା···।]

ଗୁରୁଭୈରବର ଅଦ୍ଭୁତ ଚିତ୍କାରରେ ରାଜା ବିସ୍ମିତ ହୋଇ ତାକୁ ଧମକ ଦେଇ ପଚାରିଲେ, "ଆରେ, ସନ୍ନ୍ୟାସୀ, ମନ୍ତ୍ରଦଣ୍ଡ କ'ଣ ? ଶ୍ୟାମଗୁପ୍ତ କିଏ ?"

ଗୁରୁଭୈରବ ଅତ୍ୟନ୍ତ କ୍ଷୁବ୍ଧ ହୋଇ କହିଲା, "ମହାରାଜ ! ମୁଁ ବୈରାଗୀ, ସନ୍ନ୍ୟାସୀ ନୁହେଁ । ଆପଣ ସନ୍ନ୍ୟାସୀ ବୋଲି କହି ମୋତେ ଅପମାନ କରୁଛନ୍ତି ଏହା ଅତ୍ୟନ୍ତ ଅନ୍ୟାୟ ।

ରାଜା କିଛି କହିବା ପୂର୍ବରୁ ମାୟାମର୍କଟ ଦାନ୍ତ କଡ଼ମଡ଼ କରି କହିଲା, "ଦେଖ କପଟ ବୈରାଗୀ, ବେଶୀଗୁଡ଼ାଏ ବକ୍‌ବକ୍ କରନା । ଆମ ପ୍ରଶ୍ନର ଉତ୍ତର ଦେ । ମୋ ପାଖରୁ ମନ୍ତ୍ରଦଣ୍ଡ ଚୋରାଇ-ନେଇଥିବା ଲୋକକୁ ଦେଖିଛ ?"

ଗୁରୁଭୈରବ ଆଶ୍ଚର୍ଯ୍ୟ ହୋଇ ମାୟା-



ମର୍କଟଙ୍କୁ କିଛି ସମୟ ନିରୀକ୍ଷଣ କରି ତା' ଶିଷ୍ୟମାନଙ୍କୁ ପଚାରିଲା, "ହଇହୋ, ଏଇଟି କ'ଣ ଚନ୍ଦ୍ରଶୀଳା ନଗରୀର ନୂତନ ମନ୍ତ୍ରୀ ?"

"ହଁ, ଆଜ୍ଞା ଏଇ ହେଲେ ମର୍କଟ-ଅମାତ୍ୟ !" ଦୁଇ ଶିଷ୍ୟ ସମସ୍ୱରରେ ଉତ୍ତର ଦେଲେ ।

ମାୟାମର୍କଟ ତରବାରି ନିଷ୍କାସନ କରୁ କରୁ ରହିଯାଇ ନିଜ ଲାଞ୍ଜରେ ଗୁରୁବୈରାଗୀଙ୍କୁ ଥରେ ପିଟିଦେଲା ଓ କହିଲା, "ଭଲ ଗତି ଥିଲେ ଯାହା ଯାହା ଜାଣିଛୁ ସବୁ କହିପକା । ନ ହେଲେ ମରିବୁ ।"

ଗୁରୁବୈରାଗୀ ଲାଞ୍ଜ ପ୍ରହାରରେ ତଳେ ପଡ଼ିଗଲେ । ତା'ପରେ ଉଠିପଡ଼ି ଝାଡ଼ଝୁଡ଼ ହେବା ବେଳକୁ ତାଙ୍କ ବଡ଼ ଶିଷ୍ୟ କହିଲା, "ଗୁରୁ ! ସବୁ କଥା କହିଦେବା ନିରାପଦ । ନଗରୀର ଉତ୍ତର ଦିଗରେ ଅବସ୍ଥିତ ଧର୍ମଶାଳା ଆଗରେ ଶ୍ୟାମଗୁପ୍ତର ଘର । ଆମେ ମନ୍ତ୍ରଦଣ୍ଡ ସେଇଠାରେ ଦେଖିଥିଲୁ । ନୁହେଁ ?"

ମାୟାମର୍କଟ ହସିଉଠି କହିଲା "ଗୁରୁ ଯାହା କହିବା କଥା, ଯୋଗ୍ୟଶିଷ୍ୟ ତାହା କହିଦେଲେ ! ତୁରନ୍ତ ଶ୍ୟାମଗୁପ୍ତ ଘରକୁ ସିପାହିଦଳ ପଠାଇ ମନ୍ତ୍ରଦଣ୍ଡ ଉଦ୍ଧାରର ବ୍ୟବସ୍ଥା କରନ୍ତୁ ।"

ରାଜା ତାଳି ବଜାଇବା ମାତ୍ରେ କେତେଜଣ ସିପାହି ଦୌଡ଼ିଆସିଲେ । ରାଜା ସେମାନଙ୍କୁ କହିଲେ, "ତୁମେ କେତେଜଣ ଘୋଡ଼ାରେ ବସି ଏମାନଙ୍କ ସାଥିରେ ଶ୍ୟାମଗୁପ୍ତ ଘରକୁ ଯାଅ । ତା' ଘରେ ଥିବା ମନ୍ତ୍ରଦଣ୍ଡ ସହ ତାକୁ ଧରି ନେଇଆସ ।"

ସିପାହିମାନେ ତିନି ବୈରାଗୀଙ୍କୁ ଧରି ଯିବାକୁ ବାହାରିଛନ୍ତି, ସେତିକିବେଳେ ପ୍ରାଚୀର ସେପଟେ ଶଙ୍ଖଧ୍ୱନି ଶୁଭିଲା । ତାହା ଶୁଣି ଆନନ୍ଦରେ ମାୟାମର୍କଟ କହିଲା, "ମହାରାଜ ! ଯିଏ ଏ ଶଙ୍ଖଧ୍ୱନି କରୁଛନ୍ତି, ସେ ହେଲେ ଆମ ଗୁରୁ ମିଥ୍ୟାମିଶ୍ର । ଏଥର ଆମର ସବୁ ଅସୁବିଧା ଦୂର ହେଲା ଜାଣନ୍ତୁ । ଆମ ଶତ୍ରୁ ଉଲ୍କତାନ୍ତ୍ରିକ ସମେତ ରାଜା ଦୁର୍ମୁଖ ଓ ରବିବର୍ମା ସମସ୍ତଙ୍କୁ ଏ

ଠିକ୍ ଜବଦ୍ କରିବେ । ଆପଣ ଆଉ ଅଳ୍ପ ସମୟ ଭିତରେ ରାଜ-ଚକ୍ରବର୍ତ୍ତୀ ହେବାକୁ ଯାଉଛନ୍ତି ।" ଏହା କହି ମାୟାମର୍କଟ ପ୍ରାଚୀର ଆଡ଼କୁ ଅଗ୍ରସର ହେଲା ।



ରାଜା ଜିତକେତୁ କିନ୍ତୁ ମାୟାମର୍କଟର କାନ୍ଧ ଧରି ତାକୁ ଅଟକାଇଦେଲେ ଓ କହିଲେ, "ତୁମେ ଯାଉଛ କୁଆଡ଼େ ? ମୋତେ ପରାମର୍ଶ ଦେବ କିଏ ? ଅରେ ଅରେ ମୋର ମନେହୁଏ, ଅମାତ୍ୟ ଜୀବଗୁପ୍ତକୁ ତଡ଼ିଦେଇ ମୁଁ ଖୁବ୍ ଭୁଲ କରିଛି ।"

"ମହାରାଜ ! ଆପଣଙ୍କର କୌଣସି ବିପଦ ହେବ ନାହିଁ । ଆପଣ ନିଶ୍ଚିନ୍ତ ରହନ୍ତୁ ।" ଏହା କହି ମାୟାମର୍କଟ ଦୌଡ଼ ଦେଲା ।

ଲୁଚିରହି ରବିବର୍ମା ସବୁ ଦେଖୁଥିଲେ । ମାୟାମର୍କଟ ଚାଲିଯିବା ମାତ୍ରେ ସେଠାରେ ସାମନ୍ତ ସୂର୍ଯ୍ୟଭୂପତି ପହଞ୍ଚି ରାଜାକୁ କହିଲା, "ମହାରାଜ ! ମୁଁ ବର୍ତ୍ତମାନ ମୋ ନିଜ କିଲ୍ଲାକୁ ଚାଲିଲି । ଶୁଣୁଛି ଜଣେ ରାକ୍ଷସ ଓ ଶଙ୍ଖନାଦ-କାରୀ ଜଣେ ତାନ୍ତ୍ରିକ ତା' ଶିଷ୍ୟମାନଙ୍କୁ ଧରି ମୋ କିଲ୍ଲା ଉପରେ ଚଢ଼ାଉ କରୁଛି । କିଲ୍ଲା ଭିତରେ ମୋ ପତ୍ନୀ, କନ୍ୟା ଓ ଅଳ୍ପ ସଂଖ୍ୟକ ସୈନିକଙ୍କୁ ଛାଡ଼ି ଆଉ କେହି ନାହାନ୍ତି ।"

ରାଜା ଜିତକେତୁ ଆଶ୍ଚର୍ଯ୍ୟ ହୋଇ କହିଲେ, "ଇଏ ତ ବଡ଼ ପ୍ରହେଳିକାମୟ ବ୍ୟାପାର ! ଜଣେ ରାକ୍ଷସ ଓ ତାନ୍ତ୍ରିକ ତ ଆମ ଦୁର୍ଗ ଉପରେ ଆକ୍ରମଣ କରିବାକୁ ଉଦ୍ୟତ । ଫେର୍ ତୁମ କିଲ୍ଲାଟିଁ ରାକ୍ଷସ ଓ ତାନ୍ତ୍ରିକ କାହୁଁ ଆସିଲେ ?"

ସାମନ୍ତ ସୂର୍ଯ୍ୟଭୂପତି ରାଜାର ଏ ପ୍ରଶ୍ନର କୌଣସି ଉତ୍ତର ଦେଇ ପାରିଲା ନାହିଁ । ହଠାତ୍ ଉହାଡ଼ରୁ ରବିବର୍ମା ବାହାରିଆସି କହିଲେ, "ରାଜା ! ଏହି ମୁହୂର୍ତ୍ତରେ ମୁଁ ତୁମର ଶତ୍ରୁ ନୁହେଁ । ତୁମେ ତରବାରି ବାହାର କରିବା ଦରକାର ନାହିଁ । ତୁମେ ବର୍ତ୍ତମାନ କେଡ଼େ ଅସହାୟ, ସେକଥା ମୁଁ ଭଲ ଭାବରେ ଜାଣେ । ତୁମେ ହୁଏତ ଜାଣନା, ତୁମର ମନ୍ତ୍ରୀ ମାୟା-ମର୍କଟ ପ୍ରାଚୀର ଟପି ପଳାୟନ କଲାଣି ।"



ସେ ତ ବହୁତ ପୁରୁଣା କଥା । ସେତେବେଳେ ତୁମ ମନରେ ରାଜା ରୂପେ ଖୁବ୍ ଅହଙ୍କାର ଥିଲା । ବର୍ତ୍ତମାନ ଅବସ୍ଥା ବଦଳିଗଲାଣି । ଅନେକ ଶିକ୍ଷା ପାଇଲଣି ନିଶ୍ଚୟ ।"

ରାଜା ଜଡ଼କେତୁ ସାମନ୍ତ ସୂର୍ଯ୍ୟଭୂପତି ଆଡ଼କୁ ଶଙ୍କିତ ଦୃଷ୍ଟିପାତ କରି କହିଲେ, "ରବିବର୍ମା ! ସୂର୍ଯ୍ୟଭୂପତି ଆଉ ଗୋଟିଏ ରାକ୍ଷସ ଏବଂ ତାନ୍ତ୍ରିକ କଥା କହୁଛି । ସେମାନେ ପୁଣି କିଏ ?"

"ମହାରାଜ, ସବୁ ଗଣ୍ଡଗୋଳର ମୂଳ ହେଲା ଦୁଇ ତାନ୍ତ୍ରିକଙ୍କ ଭିତରେ ଶତ୍ରୁତା ଓ ପରସ୍ପର ଦାଉ ସାଧିବା ସକାଶେ ଜିଦ୍ । ଦୁହେଁ ବ୍ରହ୍ମପୁତ୍ର ନଦୀ କୂଳରେ ଅବସ୍ଥିତ ଭଲ୍ଲୂକେଶ୍ୱର ମନ୍ଦିରର ଭକ୍ତ । ସେ ଅତି ପୁରୁଣା ମନ୍ଦିର । ଜଣକ ନାମ ଭଲ୍ଲୂକପାଦ । ତାଙ୍କର ଶିଷ୍ୟ ଭଲ୍ଲୂକ-ତାନ୍ତ୍ରିକ ଏଠାରେ ଆସି ବିଚରଣ କରୁଛନ୍ତି । ଅନ୍ୟ ଜଣଙ୍କ ନାମ ମିଥ୍ୟାମିଶ୍ର । ମାୟାମର୍କଟ ହେଲା ତାଙ୍କ ଶିଷ୍ୟ । ବାକି ରହିଲା ରାକ୍ଷସଙ୍କ କଥା । ସେମାନେ ଦୁଇ ଭାଇ । ଜଣକ ନାମ ଉଗ୍ରଦଣ୍ଡ । ସେ ଆମ ସାଥିରେ ରହିଛି । ଅନ୍ୟ ଜଣକ ନାମ କାଳଦଣ୍ଡ । ତାକୁ ମିଥ୍ୟାମିଶ୍ର ବନ୍ଦୀ ବନାଇଛି ।" ରବିବର୍ମା ବୁଝାଇଦେଲେ ।

ପ୍ରଥମେ ରାଜା ପାଟିକରି କହି ପକାଇଲେ, "ସତେ ? ହାୟ, ମୋର ବିଶ୍ୱସ୍ତ ମନ୍ତ୍ରୀଙ୍କୁ ତଡ଼ି ମାୟାମର୍କଟ ଉପରେ ମନ୍ତ୍ରୀତ୍ୱ ନ୍ୟସ୍ତ କରି ମୁଁ କେଡ଼େ ଭୁଲ କଲି !" ଏତିକି କହିସାରିବା ପରେ ଯାଇ ରାଜା ଆଗନ୍ତୁକ କିଏ ସେକଥା ଚିନ୍ତା କଲେ । ରବିବର୍ମା ସେତିବେଳକୁ ରାଜାଙ୍କ ପାଖକୁ ଲାଗି ଆସିଥାନ୍ତି ।

ରାଜା କିଛିକ୍ଷଣ ରବିବର୍ମାଙ୍କ ଆଡ଼କୁ ଅପଲକ ନୟନରେ ଅନାଇରହି କହିଲେ, "ଆଚ୍ଛା, ତୁମେ ରବିବର୍ମା କି ? ତୁମର ମୁଣ୍ଡକାଟ ପାଇଁ ମୁଁ ଆଦେଶ ଦେଇଥିଲି ନା ?"

ରବିବର୍ମା ହସିଦେଲେ ଓ କହିଲେ, "ରାଜା,

ରବିବର୍ମା ତାଙ୍କ ବକ୍ତବ୍ୟ ଶେଷ କରିବା ମାତ୍ରେ ସୂର୍ଯ୍ୟଭୂପତି କହିଲା, "ସେହି ତାନ୍ତ୍ରିକ ତାର ବନ୍ଦୀ ରାକ୍ଷସମାନଙ୍କୁ ଧରି କଳ୍ପା ଉପରେ

ଆକ୍ରମଣ କରିଛି । ମୋତେ ବର୍ତ୍ତମାନ ମୋ କଲ୍ଲା ଅଭିମୁଖେ ଯିବାକୁ ଅନୁମତି ମିଳୁ । ମୁଁ ଫେରିଆସିବି ।" ଏହା କହି ରାଜାଙ୍କୁ ଅଭିବାଦନ ଜଣାଇ ସୂର୍ଯ୍ୟଭୂପତି ବିଦାୟ ନେଲା ।

ରାଜା ଜିତକେତୁ ଚିନ୍ତିତ ଦେଖାଗଲେ ଓ ରବିବର୍ମା କହିଲେ, "ବର୍ତ୍ତମାନ ତୁମେ କ'ଣ କରିବାକୁ କହୁଛ ? ତୁମର ଗୋଟିଏ ହାତରେ ରହିଛି ମନ୍ତ୍ରଦଣ୍ଡ । ଅନ୍ୟ ହାତରେ ତୁମେ ତରବାରି ବ୍ୟବହାର କରିପାର । ମୁଁ ରାଜ୍ୟଶାସନରେ ସେତେ ଦକ୍ଷ ହୋଇ ନ ପାରେ । କିନ୍ତୁ ଲଢ଼େଇରେ କାହାଠାରୁ ଊଣା ନୁହେଁ । ତୁମେ କେଉଁ ଅସ୍ତ୍ର ମୋ ଉପରେ ପ୍ରୟୋଗ କରିବାକୁ ଯାଉଛ ?"



ରବିବର୍ମା ମନ୍ତ୍ରଦଣ୍ଡ ତଥା ନିଜ ତରବାରି ତଳେ ପକାଇ ଦେଲେ ଓ କହିଲେ, "ମହାରାଜ ! ଆପଣଙ୍କ ଉପରେ ଏଥିରୁ କୌଣସିଟି ପ୍ରୟୋଗ କରିବାର ସ୍ପୃହା ମୋର ନାହିଁ । ଆପଣଙ୍କ ରାଜ୍ୟରେ ଅନ୍ୟାୟ ଅନାଚାର ଭରିରହିଛି । ସେସବୁ ଦୂର ହୋଇପାରିଲେ ମୁଁ ସନ୍ତୁଷ୍ଟ ହେବି । ତାନ୍ତ୍ରିକ ଓ ରାକ୍ଷସଙ୍କୁ ରକ୍ଷା କରିବାର ଦାୟିତ୍ୱ ବି ମୋର ।"

ରାଜା ଜିତକେତୁଙ୍କ ବଦନରେ ପ୍ରସନ୍ନଭାବ ଫୁଟିଉଠିଲା । ସେ ତରବାରି ଉଠାଇନେଇ ରବିବର୍ମାଙ୍କୁ ଦେବାକୁ ଯାଉଛନ୍ତି, ସୁଡ଼ଙ୍ଗ ମାର୍ଗରୁ ବାହାର ହେଲେ ରାଜା ଦୁର୍ମୁଖ ତଥା ଉଲ୍ଲୁକ-ତାନ୍ତ୍ରିକ । ଦୁର୍ମୁଖ ଗୋଟାଏ ଗର୍ଜନ ଛାଡ଼ି ଅସି ବାହାର କରି କହିଲା, "ରବିବର୍ମା ! ଆମେ ତ ଭାବୁଥିଲୁ ତୁମେ ହୁଏତ କୌଣସି ବିପଦରେ ପଡ଼ିଛ । ଦେଖୁଛି, ତୁମେ ଭଲ ଅଛ । କିନ୍ତୁ ଏ ଦୁଷ୍ଟ ରାଜାକୁ ଏ ଯାଏ ଜୀବନରେ ରହିବାକୁ ଦେଇଛ କିପରି ? ଆଚ୍ଛା, ମୋତେହିଁ ସେ କାମଟି କରିବାକୁ ହେବ । ମୁଁ ତାକୁ ଏହିକ୍ଷଣି ଶେଷ କରିଦେଉଛି ।"

ଏହା କହି ଦୁର୍ମୁଖ ଜିତକେତୁ ଆଡ଼କୁ ମାଡ଼ିଗଲା । କିନ୍ତୁ ବିଜୁଳି ବେଗରେ ନିଜ ତରବାରି ଚାଳନା କରି ରବିବର୍ମା ଦୁର୍ମୁଖର ଉଦ୍ୟତ



ମିଶ୍ର, ରାକ୍ଷସ କାଳଦଣ୍ଡ ତଥା ତା’ ଶିଷ୍ୟ ଜମ୍ବୁକେଶ୍ୱରଙ୍କୁ ଧରି ଏ ଅଞ୍ଚଳରେ ଆସି ପହଞ୍ଚିଛି । ସେ ମୋ ଗୁରୁଙ୍କର ଅନିଷ୍ଟ କରିପାରେ ବୋଲି ମୋର ଆଶଙ୍କା । ତେଣୁ ଆମେ ବିଳମ୍ବ ନ କରି ଭଲ୍ଲୂକପାଦ ପର୍ବତ ଉଦ୍ଦେଶ୍ୟରେ ଯିବା ଦରକାର ।”

“କିନ୍ତୁ ଆମେ ଚାଲିଗଲେ ଏଠାରେ ପହଞ୍ଚିଥିବା ତାନ୍ତ୍ରିକକୁ ରୋକିବ କିଏ ? ସେ ତା’ ବନ୍ଦୀ ରାକ୍ଷସ ସହାୟତାରେ ବର୍ତ୍ତମାନ ସାମନ୍ତ ସୂର୍ଯ୍ୟଭୂପତିର କଳ୍ପା ଉପରେ ଚଢ଼ଉ କରୁଛି ବୋଲି ସମ୍ବାଦ ମିଳିଛି ।” ରବିବର୍ମା କହିଲେ ।

ଭଲ୍ଲୂକତାନ୍ତ୍ରିକ ବିରକ୍ତ ହୋଇ କହିଲେ, “ସେସବୁ ବ୍ୟାପାର ମୋତେ ଅଜଣା ନୁହେଁ । କିନ୍ତୁ ମୋର ପ୍ରଶ୍ନ ହେଲା ଆମେ ଏ ଅଯୋଗ୍ୟ ରାଜା ଏବଂ ଅଯୋଗ୍ୟ ସାମନ୍ତଙ୍କୁ ରକ୍ଷା କରିବା ନିମନ୍ତେ କାହିଁକି ନିଜ ଜୀବନ ବିପନ୍ନ କରିବା ?”

ରବିବର୍ମା ତୀବ୍ର ଦୃଷ୍ଟିରେ ଭଲ୍ଲୂକତାନ୍ତ୍ରିକଙ୍କୁ ଚାହିଁ କହିଲେ, “ମୁଁ ଏଇ ରାଜ୍ୟର ମାଟିରେ ଜନ୍ମଗ୍ରହଣ କରିଛି । ଏଠାକାର ପାଣି ପବନରେ ମୁଁ ବଢ଼ିଛି । ଏଠାକାର ରାଜା ବିପଦରେ ପଡ଼ିଥିବା ବେଳେ ମୁଁ ଜଣେ ଅଜଣା ତାନ୍ତ୍ରିକର ସହାୟତା କରିବା ସକାଶେ ଚାଲିଯିବି, ଏହା ମୋତେ ଉଚିତ ମନେ ହେଉ ନାହିଁ ।”

ଭଲ୍ଲୂକତାନ୍ତ୍ରିକ ସ୍ତବ୍ଧ ହୋଇ କ୍ଷଣେ ରହି

ଅସିକୁ ଅଟକାଇ ଦେଲେ ଓ କହିଲେ, “ରାଜା ଦୁର୍ମୁଖ ! ଏପରି ଅଧୈର୍ଯ୍ୟ ହୁଅ ନାହିଁ । ରାଜା ଜିତକେତୁଙ୍କ ସକାଶେ ମୋ ପିତା ଯୁଦ୍ଧଭୂମିରେ ପ୍ରାଣ ଦେଇଥିଲେ । ତେଣୁ ଏ ରାଜାଙ୍କୁ ମୋ ଆଖି ଆଗରେ କେହି ମାରିଦେବ, ତାହା ମୁଁ ସହିବି କିପରି ? ମୋ ପିତାଙ୍କ ସ୍ମୃତିରେ ଏହାଙ୍କୁ ରକ୍ଷା କରିବା ମୋର କର୍ତ୍ତବ୍ୟ ।”

ଦୁର୍ମୁଖ କ୍ରୁଦ୍ଧ ହୋଇ କ’ଣ କରିବ ଠିକ୍ କରି ପାରୁ ନ ଥାଏ । ଭଲ୍ଲୂକତାନ୍ତ୍ରିକ ତଳେ ପଡ଼ିଥିବା ମନ୍ତ୍ରଦଣ୍ଡଟି ଉଠାଇନେଇ କହିଲେ, “ରବିବର୍ମା ! ତୁମେ ଏଥର ମୋ କଥା ଶୁଣ । ମୋ ଗୁରୁ ଭଲ୍ଲୂକପାଦଙ୍କ ଶତ୍ରୁ ତାନ୍ତ୍ରିକ ମିଥ୍ୟା-

କହିଲେ, "ରବିବର୍ମା ! ତୁମେ ମୋ ଶିଷ୍ୟଟି ? ମୁହୂର୍ତ୍ତକ ଭିତରେ ତୁମର ଏତେ ପରିବର୍ତ୍ତନ ହେଲା କପରି ? ରାଜା ଜିତକେତୁ ଯେ ମନ୍ତ୍ର-ଦଣ୍ଡ ଆଣିବା ଲୋକକୁ କନ୍ୟା ଓ ଅର୍ଦ୍ଧେକ ରାଜ୍ୟ ଦେବାର ଘୋଷଣା କରିଛନ୍ତି, ତୁମେ ସେଇଥିରେ ପ୍ରଲୁବ୍ଧ ହୋଇଛ କି ?"



"ଏଥିରେ ରାଜାଙ୍କ ଘୋଷଣା ସତ କି ମିଛ, ସେ ପ୍ରଶ୍ନ ନାହିଁ । ତୁମେ ଭୁଲି ଯାଉଛ ଯେ ମୁଁ ମନ୍ତ୍ରଦଣ୍ଡ ରାଜାଙ୍କୁ ଦେଇ ନାହିଁ । ତୁମ ହାତରେ ତାହା ରହିଛି ।" ରବିବର୍ମା ଶାନ୍ତ ଭାବରେ ଉତ୍ତର ଦେଲେ ।

ରାଜା ଜିତକେତୁ ରାଜା ଦୁର୍ମୁଖ ଉଦ୍ଦେଶ୍ୟରେ କିଛି କହିବାକୁ ଯାଉଛନ୍ତି, ସେତିକିବେଳେ ଭୀଷଣ ଗର୍ଜନ ଗୁଡ଼ି ସୁଡ଼ଙ୍ଗ ଭିତରୁ ପଦାକୁ ବାହାରି ଆସିଲା ରାକ୍ଷସ ଉଗ୍ରଦଣ୍ଡ । ସେ ଗଦା ଉଠାଇ କହିଲା, "ମହାରାଜ ! ଏଠାରେ ଖାଲି ଦୁର୍ମୁଖ ନୁହେଁ, ମୁଁ ଅଛି, ଘାତକଭଲ୍ଲୂକ ବି ଆସୁଛି । ଆପଣଙ୍କର ଯାହା ବକ୍ତବ୍ୟ, ତାହା ସମସ୍ତଙ୍କ ଉଦ୍ଦେଶ୍ୟରେ କୁହନ୍ତୁ ।"

ଉଗ୍ରଦଣ୍ଡର ଚେହେରା ଦେଖି ଓ ଭୀମ କଣ୍ଠସ୍ୱର ଶୁଣି ରାଜା ଶଙ୍କିତ ଦେଖାଗଲେ । ତା'ପରେ ସାହସ ସଞ୍ଚୟ କରି କହିଲେ, "ମୋ ମନ କଥା କହିଦେଉଛି । ମୋର ନିଜର ସନ୍ତାନ ସନ୍ତତି ନାହିଁ । ସାମନ୍ତ ସୂର୍ଯ୍ୟଭୂପତିର କନ୍ୟାକୁ ମୁଁ ଝିଅ କରିଛି । ମୋ ଅନ୍ତେ ମୋ ରାଜ୍ୟର ଉତ୍ତରାଧିକାରୀ କିଏ ହେବ ତାହାହିଁ ଥିଲା ମୋର ଚିନ୍ତା । ବର୍ତ୍ତମାନ ଭାବୁଛି ମୋ ପାଳିତା କନ୍ୟା ସହ ରବିବର୍ମାର ବିଭା ଦେବି । ସେ ହେବେ ମୋର ଉତ୍ତରାଧିକାରୀ ।"

ଭଲ୍ଲୂକତାନ୍ତ୍ରିକ ଚିତ୍କାର କଲା : "ଜୟଗୁରୁ ଭଲ୍ଲୂକପାଦଙ୍କର ଜୟ !" ତା'ପରେ କଣ୍ଠସ୍ୱର ନିମ୍ନ କରି ସେ କହିଲା, "ତୁମ୍ଭେମାନେ ହାଓ୍ୱାରେ ମହଲ ବନାଉଛ । ସୂର୍ଯ୍ୟଭୂପତିର କିଲ୍ଲା ଦଖଲ କରି ମିଥ୍ୟାମିତ୍ର ତା' ଝିଅକୁ ବନ୍ଦୀ କରି ହୁଏତ ନିଜର ପାର୍ବତ୍ୟ ପ୍ରଦେଶକୁ ନେଇଯିବଣି । ଭଲ୍ଲୂକପାଦ ସକାଶେ ସେ କେତେ କାଳ ହେଲା

ମନେ ମନେ ଗୋଟିଏ ପୂଜାରିଣୀ ଖୋଜୁଥିଲି ।"

"ମୁଁ ବଞ୍ଚିଥିବା ଯାଏ କେହି ସେପରି କରିପାରିବେ ନାହିଁ ।" ଏହା କହି ରବିବର୍ମା ତରବାରି ବାହାର କଲେ ।

"ରବିବର୍ମା ! ମୁଁ ବି ତୁମର ସହାୟତା କରିବାର ଶପଥ ନେଲି !" ଏହା କହି ରାକ୍ଷସ ଉଗ୍ରଦଣ୍ଡ ବି ଗଦା ଉଠାଇଲା ।

ଭଲ୍ଲୁକତାନ୍ତ୍ରିକ ଅଳ୍ପ ହସି କହିଲେ, "ଉଗ୍ରଦଣ୍ଡ, ମୋର କାମନା ତୁମ୍ଭେମାନେ ତୁମ ଅଭିଯାନରେ ସଫଳ ହୁଅ । ତାନ୍ତ୍ରିକ ମିଥ୍ୟାମିଶ୍ର କବଳରୁ ତୁମ ଭାଇ କାଳଦଣ୍ଡକୁ ମୁକ୍ତ କର । ମୋର ମନେହୁଏ, କୌଣସି ଔଷଧ ଦ୍ୱାରା କାଳଦଣ୍ଡର ମତିଭ୍ରମ କରାଇ ତାନ୍ତ୍ରିକ ତା' ଦ୍ୱାରା ନିଜ କାର୍ଯ୍ୟ ହାସଲ କରୁଛି । ଆଚ୍ଛା, ମୁଁ ଏଥର ଚାଲିଲି ।" ଏହା କହି ଭଲ୍ଲୁକତାନ୍ତ୍ରିକ ସୁଡ଼ଙ୍ଗ ମାର୍ଗ ଆଡ଼କୁ ଚାଲିଲେ ।

କିନ୍ତୁ ସେତିକିବେଳେ ଗୋଟିଏ ବୁଦା ଆଡ଼ୁଆଳରୁ ଆଗକୁ ଡେଇଁ ଆସିଲା ଘାତକଭଲ୍ଲୁକ ।

"ହେ ତାନ୍ତ୍ରିକ, ଟିକିଏ ରୁହ । ମୋତେ ଯେ ମନ୍ତ୍ର ପ୍ରଭାବରେ ଅଧା ଭାଲୁ ବନାଇ ରଖିଛ, ମୁଁ କ'ଣ ଆଜୀବନ ସେମିତି ରହିଥିବି ? ମୋତେ ପୁଣି ମୋର ପୂର୍ବ ରୂପ ଫେରାଇଦିଅ । ନ ହେଲେ ହତାଶ ହୋଇ ମୁଁ ଯାହା ଇଚ୍ଛା ତାହା କରିବି । ହୁଏତ ତୁମ ମୁଣ୍ଡ କାଟିପକାଇବି ।"

ଭଲ୍ଲୁକତାନ୍ତ୍ରିକ ଡରିଗଲେ । ସେ କହିଲେ, "ବାବୁ ! ତୁମେ ଭାଲୁ ନୁହଁ, ତୁମେ ଏ ନଗରୀର ପ୍ରଧାନ ଘାତକ । ତୁମେ ଯାଅ, ଅନେକ ଅପରାଧୀ ପ୍ରାଣଦଣ୍ଡ ପାଇବାକୁ ଅପେକ୍ଷା କରିଛନ୍ତି । ତୁମ କାମ ତୁମେ କର ।"

ଏହା କହି ଭଲ୍ଲୁକତାନ୍ତ୍ରିକ ନିଜ ମନ୍ତ୍ରଦଣ୍ଡ ତିନିଥର ଘାତକଭଲ୍ଲୁକ ମୁଣ୍ଡରେ ଛୁଆଁଇ ଦେଇ ବିଜୁଳି ବେଗରେ ସୁଡ଼ଙ୍ଗ ମଧ୍ୟରେ ଅନ୍ତର୍ହିତ ହୋଇଗଲେ

(ଆଗାମୀ ସଂଖ୍ୟାରେ ସମାପ୍ୟ)





# ବିଷମ ପରିସ୍ଥିତି !

ରାତି ହୋଇଥାଏ ମେଘାଚ୍ଛନ୍ନ । ଘନ ଘନ ବିଜୁଳି ଓ ବାରିପାତ ସାଙ୍ଗକୁ ବଜ୍ରଧ୍ୱନି ଓ ଅଶରୀରୀମାନଙ୍କ ଅଟ୍ଟହାସ୍ୟ ଶୁଭୁଥାଏ । ଥରେ ଥରେ ବିକଟ ମୁହଁମାନ ବିଜୁଳି ଆଲୁଅରେ ଝଟକିଉଠୁଥାଏ ।

କିନ୍ତୁ ରାଜା ବିକ୍ରମାର୍କ ଅଧୈର୍ଯ୍ୟ ନ ହୋଇ ପୁନର୍ବାର ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତା'ପରେ ତାକୁ କାନ୍ଧରେ ପକାଇ ଶୂନ୍‌ଶାନ୍ ଶ୍ମଶାନପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା ! ତୁମେ ଯାହା କରୁଛ, ତାହା ରାଜଧର୍ମର ଅନୁକୂଳ କି ? ରାଜାଙ୍କ ସବୁ କାମ ଯେ ରାଜଧର୍ମ ହେବ, ଏପରି କିଛି କଥା ନାହିଁ । ମହାରାଜା ନିରଙ୍କୁଶ କଥା ଧର । କହୁଛି ସେ ଗପ । ମନ ଦେଇ ଶୁଣ । ଶୁଣିଲେ ଶ୍ରମଭାର ଲଘବ ମନେ ହେବ ।"

ବେତାଳ ଗପିଚାଲିଲା : କୁଞ୍ଜଗଡ଼ ନାମକ

ବେତାଳ କଥା



ଦେଶରେ ସେତେବେଳେ ରାଜୁତି କରୁଥାନ୍ତି ରାଜା ନରଙ୍କୁଶ । ଦିନେ ତାଙ୍କ ରାଜ୍ୟରେ ଥିବା ଗୋଟିଏ ନିବିଡ଼ ଜଙ୍ଗଲରେ ଅଧିବାସୀମାନେ ଆସି ତାଙ୍କୁ ଖବର ଦେଲେ କି ଜଙ୍ଗଲରେ ଗୋଟାଏ ରାକ୍ଷସ ଆସି ରହୁଛି । ରାଜା ତାକୁ ବଧ କରିବା ଉଚିତ ।

ରାଜା ଆଶ୍ଚର୍ଯ୍ୟ ହେଲେ । କାରଣ ରାକ୍ଷସ ଜାତି ପୃଥିବୀରୁ ବହୁ ଦିନରୁ ବିଲୁପ୍ତ ହେଲେଣି ବୋଲି ତାଙ୍କ ଧାରଣା ଥିଲା । ସେ ବନବାସୀମାନଙ୍କୁ ପଚାରିଲେ, "ସେ ତୁମର କିଛି କ୍ଷତି କରିଛି ?" ସେମାନେ କହିଲେ, "କରିନାହିଁ ସତ, କିନ୍ତୁ ଯେକୌଣସି ମୁହୂର୍ତ୍ତରେ କରିପାରେ !"

"କିନ୍ତୁ ସେ ରାକ୍ଷସ ବୋଲି କିପରି ଜାଣିଲ ? ସେ କ'ଣ ତାଳଗଛ ପରି ଉଚ ?" ରାଜା ପ୍ରଶ୍ନ କଲେ ।

"ମହାରାଜ, ସେ ସେଭଳି ଉଚ ନ ହେଲେ ମଧ୍ୟ ଆମଠାରୁ ବହୁତ ଉଚ ଏବଂ ମଜବୁତ୍ । ସିଂହ ଭଳି ଶକ୍ତିଶାଳୀ ।" ବନବାସୀମାନେ କହିଲେ ।

"କିନ୍ତୁ ସେ ରାକ୍ଷସ ବୋଲି ଜାଣିଲ କିପରି ?" ରାଜା ପୁଣି ପ୍ରଶ୍ନ କଲେ ।

"ହଜୁର, ସେ ଗୋଟାଏ ଗଛ ମୂଳରେ ବସି ଖାଉଥିଲା । ହଠାତ୍ ଗୋଟାଏ ବାଘ ତା' ଉପରକୁ ଲମ୍ଫ ଦେଲା । ସେ ବାଘକୁ ତଳେ ପକାଇଦେଇ ତା' ଗୋଡ଼ ଦୁଇଟା ଧରି ଏମିତି ବେଗରେ ବୁଲାଇ ବୁଲାଇ କଚାଡ଼ିଦେଲା ଯେ ବାଘ ମଲା । ରାକ୍ଷସ ନ ହେଲେ ଏପରି କିଏ କରିବ ? ଆମେମାନେ ଏ ଦୃଶ୍ୟ ନିଜେ ଦେଖିଛୁ ।" ବନବାସୀମାନେ ଜଣାଇଲେ ।

ରାଜା ଟିକିଏ ନୀରବ ରହି କହିଲେ, "ଦେଖ, ତୁମେମାନେ ବୃଥାରେ ଡରୁଛ । ମୋର ପରାମର୍ଶ ହେଲା, ତୁମେମାନେ ବଣ ଭିତରକୁ ଫେରିଯାଇ ନିଶ୍ଚିନ୍ତରେ ରୁହ । ଯଦି ବଣକୁ ଯିବାକୁ ନିହାତି ଡର ଲାଗୁଛି, ତେବେ ମୋତେ ଜଣାଅ । ମୁଁ ବଣ ବାହାରେ ତୁମମାନଙ୍କ ରହିବାର ବ୍ୟବସ୍ଥା କରିଦେବି ।"

ବନବାସୀମାନେ ରାଜଚନ୍ଦ୍ର ପରେ ସେମାନଙ୍କ ସିଦ୍ଧାନ୍ତ ଜଣାଇବେ କହି ବିଦାୟ ନେଲେ । ତା'ପରେ ମନ୍ତ୍ରୀ କହିଲେ, "ମହାରାଜ, ଆପଣ ଇଏ କ'ଣ କଲେ ? ଯେଉଁ ରାକ୍ଷସ ଖାଲି ହାତରେ ବାଘ ମାରିପକାଉଛି, ତାକୁ ଆପଣ ବଣ ଭିତରେ ନିରାପଦରେ ରହିବାକୁ ଛାଡ଼ି-ଦେବେ କିପରି ?"

"ଯେତେବେଳେ ବାଘ ମଣିଷ ଖାଏ, ଆମେ ସେତେବେଳେ ସେ ବାଘକୁ ମାରିଦେଉ । ଯଦି ସେ ରାକ୍ଷସ ମଣିଷଙ୍କ ଅନିଷ୍ଟ କରିବ, ସେତେ-ବେଳେ ଆମେ ତାକୁ ମାରିବୁ । ବର୍ତ୍ତମାନ ବ୍ୟସ୍ତ ହେବାର କ'ଣ ଅଛି ?" ରାଜା କହିଲେ ।

"ମହାରାଜ ! ଆପଣଙ୍କ ସିଦ୍ଧାନ୍ତ ମୁଁ ବୁଝି ପାରୁନାହିଁ । ରାକ୍ଷସଜାତି ମଣିଷଜାତିର ଶତ୍ରୁ, ଏହା ସମସ୍ତେ ଜାଣନ୍ତି । ରାକ୍ଷସର ସ୍ୱଭାବ କ୍ରୂର । ଆପଣ ତାକୁ ନିରାପଦରେ ରହିବାକୁ ଛାଡ଼ି-ଦେବେ, ଏହା କ'ଣ ଉଚିତ ହେବ ?" ମନ୍ତ୍ରୀ ପୁଣି ନିଜ ସନ୍ଦେହ ପ୍ରକାଶ କଲେ ।

ରାଜା ଟିକିଏ ନୀରବ ରହି କହିଲେ, "ମନ୍ତ୍ରୀ ! ଆପଣଙ୍କର ଯାହା ଉଚିତ ମନେ ହେଉଛି, ଆପଣ ତାହାହିଁ କରନ୍ତୁ ।"

ମନ୍ତ୍ରୀ ଖୁସି ହେଲେ ଓ ସଙ୍ଗେ ସଙ୍ଗେ ସେନା-ପତିଙ୍କୁ ଡକାଇ କହିଲେ, "ବଣ ଭିତରେ ଗୋଟାଏ ରାକ୍ଷସ ଆସି ରହିଛି । ତୁମେ ତାକୁ ମାରି ତା' ମୃତଦେହ ନେଇ ଆସ ।"

ସେନାପତି ନିର୍ଦ୍ଦେଶ ପାଳନ କରିବା ପାଇଁ





ଜବାବ ଦେଇ ବାହାରି ଗଲେ । ସେ ପ୍ରକୃତରେ ଜଣେ ବୀର ଯୋଦ୍ଧା ଥିଲେ । ଯୁଦ୍ଧକ୍ଷେତ୍ରରେ ସେ ହାତୀକୁ ବି ମାରିଦେଉଥିଲେ । ରାକ୍ଷସକୁ ଯେ ସେ ଅକ୍ଳେଶରେ ମାରିଦେଇ ପାରିବେ, ଏଥିରେ ତାଙ୍କର ସନ୍ଦେହ ନ ଥିଲା । ସେ ତେଣୁ ଅଳ୍ପ କେତେଜଣ ସୈନ୍ୟ ଧରି ବଣ ଭିତରକୁ ଗଲେ ।

ଅଳ୍ପ ସମୟ ଭିତରେ ରାକ୍ଷସ ସେମାନଙ୍କ ଆଖିରେ ପଡ଼ିଲା । ସେତେବେଳେ ବି ସେ ଗୋଟାଏ ବାଘ ସହ ଲଢ଼େଇ କରୁଥିଲା । ସେ ଦୃଶ୍ୟ ଦେଖି, ବାଘର ଓ ରାକ୍ଷସର ଭୟଙ୍କର ରଡ଼ି ଶୁଣି ସେନାପତିଙ୍କ ପଛରେ ଥିବା ତାଙ୍କ ସୈନିକମାନେ ଭୀତ ହୋଇ ଏଣେତେଣେ ଲୁଚି-ଗଲେ । କିନ୍ତୁ ରାକ୍ଷସ ବାଘକୁ ମାରିଦେବା ମାତ୍ରେ ସେନାପତି ତରବାରି ବାହାର କରି ତାକୁ ସାମନା କରିବାକୁ ପ୍ରସ୍ତୁତ ହୋଇଗଲେ । ରାକ୍ଷସ ବାଘକୁ ଛାଡ଼ି ସେନାପତିଙ୍କ ଆଡ଼କୁ ଅନାଇ ପଚାରିଲା, "ତୁମେ ଏଠାକୁ କାହିଁକି ଆସିଛ ?"

"ତୁମକୁ ହତ୍ୟା କରିବାକୁ !" ସେନାପତି ଜବାବ ଦେଲେ ଓ ତରବାରି ଉତ୍ତୋଳନ କଲେ ।

"ସତେ ? ନିଜେ ନିହତ ହେବାକୁ ନୁହେଁ ତ ?" ଏହା କହି ରାକ୍ଷସ ଏମିତି କ୍ଷିପ୍ର ଗତିରେ ସେନାପତିଙ୍କ ହାତରେ ଆଘାତ ଦେଲା ଯେ ସେନାପତିଙ୍କ ତରବାରି ଖସିପଡ଼ିଲା । ରାକ୍ଷସ ତାକୁ ଗୋଡ଼ରେ ଦୂରକୁ ଫିଙ୍ଗିଦେଇ କହିଲା, "ହେଲା, ଏଥର ତୁମେ ଯାଇପାର ।"

ସେନାପତି ରାଜଧାନୀକୁ ଫେରିଆସି ମନ୍ତ୍ରୀଙ୍କୁ ସବୁ କଥା ଶୁଣାଇଲେ । ମନ୍ତ୍ରୀ ଯାଇ ରାଜାଙ୍କୁ ସବୁ ଜଣାଇ ପଚାରିଲେ, "ଏ ବିଷମ ପରିସ୍ଥିତିରେ ଆମ କର୍ତ୍ତବ୍ୟ କ'ଣ ?"

ରାଜା ଟିକିଏ ହସି କହିଲେ, "ଆମ କର୍ତ୍ତବ୍ୟ ହେଲା ଚୁପ୍‌ଚାପ୍ ରହିବା । ଯିଏ ଯାହା କାମ କରନ୍ତୁ । ରାକ୍ଷସକୁ ନେଇ କାହାରି ମୁଣ୍ଡ ବୁଲାଇବା ଦରକାର ନାହିଁ ।"

ଗଳ୍ପଟି କହିସାରି ବେତାଳ ପ୍ରଶ୍ନ କଲା,

"ରାଜା ! ଏଭଳି ବିଷମ ପରିସ୍ଥିତିରେ କୁଞ୍ଜଗଡ଼ର ରାଜା ନିଶ୍ଚିନ୍ତ ରହିଲେ କିପରି ? ମୂଳରୁ ହୁଏତ ସେ ରାକ୍ଷସ ପ୍ରତି ଅଜ୍ଞାନତା ବଶତଃ ଅବଜ୍ଞା ଭାବ ଦେଖାଉଥିଲେ । କିନ୍ତୁ ରାକ୍ଷସ ସେନାପତିଙ୍କୁ ଅପମାନିତ କରିବା ପରେ ବି ସେ ତାକୁ ଦମନ କରିବା ଦିଗରେ କୌଣସି ପଦକ୍ଷେପ ନ ନେବା ଆଶ୍ଚର୍ଯ୍ୟଜନକ ନୁହେଁ କି ? ରାକ୍ଷସର ଶକ୍ତିର ପରିଚୟ ପାଇ ମଧ୍ୟ ପ୍ରମାଦ ନ ଗଣିବା ରାଜାଙ୍କ ପକ୍ଷରେ ନିର୍ବୁଦ୍ଧିର ପରିଚୟ ନୁହେଁ କି ? ଯଦି ପାରିବ, ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତୁମ ମସ୍ତକ ହେବ ସ୍କନ୍ଧ-ଚ୍ୟୁତ ।"

ବିକ୍ରମାର୍କ ଉତ୍ତର ଦେଲେ : "ରାଜା ବିବେକୀ ଓ ବୁଦ୍ଧିମାନ୍ । ବଣ ଭିତରେ ସେ ଜୀବ ରାକ୍ଷସ ହୋଇଥିଲେ ବି ସେ ଯେ ଯାଏ ମଣିଷର କ୍ଷତି କରିନାହିଁ, ସେ ଯାଏ ତା'ର ଅନିଷ୍ଟ କରିବା ରାଜଧର୍ମର ବିରୋଧୀ । ସେନାପତିଙ୍କ ଅପମାନ ପ୍ରାସଙ୍ଗିକ ନୁହେଁ । ସେନାପତି ତ ତାକୁ ମାରିବାକୁ ଯାଇଥିଲେ । ରାକ୍ଷସ ତାଙ୍କୁ ନିରସ୍ତ୍ର କରି ମଧ୍ୟ ନ ମାରି ଛାଡ଼ିଦେଲା । ଏହା ତା'ର ଉଦାରତାର ପରିଚୟ ଦିଏ । ଯିଏ ଆମଠାରୁ ଅଧିକ ଶକ୍ତିଶାଳୀ ହୋଇଥିବ ସେ ଆମର ଶତ୍ରୁ ହେବ, ଏପରି କିଛି କଥା ନାହିଁ । ସେଭଳି ଭାବିବା କୁସଂସ୍କାର । ଭଗବାନଙ୍କ ସୃଷ୍ଟିରେ ସବୁ ପ୍ରକାର ପ୍ରାଣୀଙ୍କର ସ୍ଥାନ ଅଛି । ତେବେ ରାକ୍ଷସ ଯଦି ମଣିଷର ବିପଦର କାରଣ ହୋଇଥାନ୍ତା, ତେବେ ରାଜା ତାକୁ ସୈନ୍ୟଦଳ ପଠାଇ ମାରିବାରେ ଯୁକ୍ତି ଥାନ୍ତା । ପରିସ୍ଥିତିରେ ମୋଟେ ବିଷମତା ନ ଥିଲା । ତେଣୁ ରାଜା ସମସ୍ତଙ୍କୁ ସ୍ୱାଭାବିକ ଭାବରେ ଚଳିବାକୁ ଆଦେଶ ଦେଲେ ।"

ରାଜା ଉତ୍ତର ଦେଇସାରିବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁଣି ବୃକ୍ଷଡାଳରେ ଝୁଲିପଡ଼ିଲା । (କଳ୍ପିତ)



# ପିତୃଭକ୍ତ !

ରାଧାଶ୍ୟାମବାବୁ ଥରେ ବେମାର ପଡ଼ିଲେ । ତାଙ୍କ ଦୁଇ ଝିଅରୁ ଶଶିରେଖା ବାହା ହୋଇ ଶ୍ୱଶୁର ଘରେ ଥାଏ । ସାନଝିଅ ଉମା ତାଙ୍କ ପାଖରେ ଥାଇ ତାଙ୍କ ସେବା ଶୁଶ୍ରୂଷା କରୁଥାଏ ।

ବୈଦ୍ୟ କହିଲେ, ରାଧାଶ୍ୟାମବାବୁ ଯେଉଁ ପାତ୍ରରେ ଖିଆପିଆ କରିବେ ଯେଉଁ ଲୁଗାପଟା ପିନ୍ଧିବେ, ସେସବୁ ଘରର ଅନ୍ୟ ବାସନକୁସନ ଲୁଗାପଟା ସହ ମିଶିବା ଅନୁଚିତ । ସେ କ'ଣ କ'ଣ ଖିଆପିଆ କରିବେ, ବୈଦ୍ୟ ତା'ର ତାଲିକା କରିଦେଲେ ଓ କହିଲେ, "ଏହା ଛଡ଼ା ଅନ୍ୟ କୌଣସି ଚିଜ ଯେପରି ତାଙ୍କୁ ଦିଆ ନ ହୁଏ !"

ଉମା ବୈଦ୍ୟଙ୍କ ନିର୍ଦ୍ଦେଶ ଯଥାର୍ଥ ଭାବରେ ମାନୁଥାଏ । ସେଥିରେ ରାଧାଶ୍ୟାମବାବୁ ବିରକ୍ତ ହେଲେ । ସେ ଶଶିରେଖାକୁ ଡକାଇପଠାଇଲେ । ଶଶିରେଖା ଆସି ଉମାକୁ ଧମକ ଦେଇ କହିଲା, "ତୋର ପିତୃଭକ୍ତି ବୋଲି କିଛି ନାହିଁ ? ତାଙ୍କର ଯାହା ଇଚ୍ଛା ସେ ଖାଆନ୍ତୁ । ସେ ବାପା । ତାଙ୍କ ଲୁଗାପଟା ବାସନକୁସନ ପୁଣି ଅଲଗା ରଖାହେବ କ'ଣ ?"

ଶଶିରେଖାର ଶୁଶ୍ରୂଷାରେ ପନ୍ଦରଦିନ ଭିତରେ ରାଧାଶ୍ୟାମବାବୁଙ୍କ ଦେହ ଆହୁରି ବିଗିଡ଼ିଗଲା । ଶୋଚନାର କଥା, ଶଶିରେଖା ନିଜେ ମଧ୍ୟ ସେ ରୋଗରେ ପୀଡ଼ିତ ହେଲା ।

ସେତେବେଳେ ଯାଇ ଶଶିରେଖାର ସ୍ୱାମୀ ଆସି ସମସ୍ତଙ୍କୁ ନିଜ ବସାକୁ ନେଇଗଲା ଓ ଶଶିରେଖାକୁ କହିଲା, "ତୁମ ପିତୃଭକ୍ତି ଶତ୍ରୁତା ସହ ସମାନ ।" ଚିକିତ୍ସାରେ ଉଭୟ ଅବଶ୍ୟ ଭଲ ହେଲେ ।





# ମନ୍ଦାରବତୀ କଥା

ଅନେକ ଦିନ ତଳର କଥା । ଉଜ୍ଜୟିନୀ ନଗରୀରେ ଯଶସ୍କର ନାମକ ଜଣେ ବ୍ରାହ୍ମଣ ରହୁଥା'ନ୍ତି । ତାଙ୍କର ଶଶିଭୂଷଣ ନାମରେ ପୁଅଟିଏ ଥାଏ । ସେ ଦେଖିବାକୁ ଯେମିତି ସୁନ୍ଦର, ଗୁଣରେ ମଧ୍ୟ ତତୋଧିକ । ଗୁରୁକୁଳରେ ପଢ଼ିବା ସମୟରେ ବିଜୟସେନ୍ ନାମକ କ୍ଷତ୍ରିୟ ଯୁବକ ସହିତ ତା'ର ବନ୍ଧୁତା ହେଲା ।

ପରେ ବିଜୟ ସହିତ ତା'ର ଭଉଣୀ ମନ୍ଦାରବତୀ ଆଚାର୍ଯ୍ୟଙ୍କ ଘରକୁ ଆସିଥାଏ । ସୁନ୍ଦରୀ ମନ୍ଦାରବତୀକୁ ଦେଖି ଶଶିଭୂଷଣ ମୁଗ୍ଧ ହେଲା । ମନ୍ଦାରବତୀ ମଧ୍ୟ ଘରକୁ ଫେରି ତା'ର ମା'ଙ୍କୁ ଶଶିଭୂଷଣର ରୂପ ଗୁଣ ବର୍ଣ୍ଣନା କଲା । ତେଣୁ ତା'ର ମା' ପୁଅ ବିଜୟକୁ କହିଲେ ପରେ ଶଶିଭୂଷଣକୁ ଘରକୁ ବୁଲାଇ ଆଣିବାକୁ ।

ଦିନେ ବିଜୟସେନ୍ ଶଶିଭୂଷଣକୁ ଘରକୁ ଡାକିଆଣିଲା । ଘରେ ଥିବାବେଳେ ବିଜୟସେନ୍ ଯେତେବେଳେ ତା' ପିତାଙ୍କ ସହ କଥାବାର୍ତ୍ତା କରିବାକୁ ଗଲା ସୁବିଧା ଦେଖି ମନ୍ଦାରବତୀର ସଖୀ ଧାତ୍ରେୟୀ ମାଳତୀଫୁଲର ମାଳଟିଏ ଆଣି ଶଶିଭୂଷଣକୁ ଦେଇ କହିଲା, "ଏଇ ମାଳାଟି ମୋର ସଖୀ ମନ୍ଦାରବତୀ ଗୁନ୍ଥି ଆପଣଙ୍କ ପାଖକୁ ପଠାଇଛି ।"

ଶଶିଭୂଷଣ ଉତ୍ତରରେ କହିଲା, "ତୁମ ସଖୀଙ୍କୁ କହିଦିଅ ଯେ ଯଦି ସେ ଚାହିଁବେ ତ ତାଙ୍କ ପାଇଁ ମୁଁ ସବୁକିଛି ଦେଇପାରେ, ଜୀବନ ମଧ୍ୟ ଉତ୍ସର୍ଗ କରିପାରେ ।" ସ୍ୱଭାବତଃ ସେଇଦିନଠାରୁ ଦୁହିଁଙ୍କ ମଧ୍ୟରେ ପ୍ରେମ ବଢ଼ିଚାଲିଲା ।

କିଛିଦିନ ପରେ ଜଣେ କ୍ଷତ୍ରିୟଯୁବକ ମନ୍ଦାରବତୀ ଘରକୁ ଆସି ତା'ର ପିତାଙ୍କୁ କହିଲା ଯେ ସେ ମନ୍ଦାରବତୀକୁ ବିବାହ କରିବାକୁ ଚାହେଁ ।

(ପଚିଶ ବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ)



ମନ୍ଦାରବତୀର ପିତା ଝିଅର ପ୍ରେମ ସମ୍ପର୍କରେ କିଛି ଜାଣି ନ ଥିଲେ । ତେଣୁ ସେ ଖୁସିରେ ରାଜି ହୋଇଗଲେ ଓ ବିବାହ ପାଇଁ ଶୁଭ ମୁହୂର୍ତ୍ତ ମଧ୍ୟ ଠିକ୍ କରିଦେଲେ ।

ମନ୍ଦାରବତୀର ବିବାହ ହେଉଛି ଶୁଣିବା ମାତ୍ରେ ଶଶିଭୂଷଣ ଖୁବ୍ ମାନସିକ ଯନ୍ତ୍ରଣା ଭୋଗ କଲା । ସେ ଭାବିଲା ଥରେ ଅନ୍ତତଃ ମନ୍ଦାରବତୀକୁ ଦେଖିଲେ ତା'ର ମନର ଯନ୍ତ୍ରଣା ଉପଶମ ହେବ; ହେଲେ ସେପରି ସୁବିଧା ତାକୁ ମିଳିଲା ନାହିଁ ।

ବିବାହର ଦିନ ଆସିଗଲା । ମନ୍ଦାରବତୀକୁ ସ୍ନାନ କରାଇ ଅଳଙ୍କାର ପିନ୍ଧାଇଦିଆଗଲା । ବର ମଧ୍ୟ ଠିକ୍ ସମୟରେ ମଙ୍ଗଳବାଦ୍ୟ ବଜାଇ ଆସି ପହଞ୍ଚିଲା ।

ସେ ପର୍ଯ୍ୟନ୍ତ ଶଶିଭୂଷଣ ମନରେ ଆଶା ଥିଲା ଯେ ଯଦି ମନ୍ଦାରବତୀର ବିବାହ କୌଣସିମତେ ଭାଙ୍ଗିଯାଏ ! କିନ୍ତୁ ଏବେ ଆଉ ସେ ଆଶା ବି ନାହିଁ । ସେ ଭାବିଲା ଏତେ ମାନସିକ ଯନ୍ତ୍ରଣା ସହ୍ୟ କରିବା ଅପେକ୍ଷା ଆତ୍ମହତ୍ୟା କରିବା ହିଁ ଭଲ ! ସେତେବେଳର ନିୟମ ଅନୁସାରେ କନ୍ୟା ବିବାହ ପୂର୍ବରୁ ନଗର ବାହାରେ ସ୍ଥିତ କାମଦେବଙ୍କ ମନ୍ଦିରକୁ ପୂଜା ଦେବାକୁ ଯାଏ । ତେଣୁ ଶଶିଭୂଷଣ ଭାବିଲା କାମଦେବଙ୍କ ମନ୍ଦିର ରାସ୍ତାରେ ଥିବା ବରଗଛରେ ସେ ଦଉଡ଼ି ଦେଇ ଆତ୍ମହତ୍ୟା କରିବ । ତା'ହେଲେ ଅନ୍ତତଃ ମନ୍ଦାରବତୀ ତା'ର ଶବକୁ ଦେଖିପାରିବ ।

ଇତିମଧ୍ୟରେ ମନ୍ଦାରବତୀର ସଖୀ ଧାତ୍ରେୟୀ ସକାଳେ ଶଙ୍ଖହ୍ରଦ ନାମକ ସରୋବରକୁ ସ୍ନାନ କରିବାକୁ ଯାଇଥିବା ବେଳେ ସୋମଦତ୍ତ ନାମକ ଏକ ବ୍ରାହ୍ମଣ ଯୁବକ ତା'ର ରୂପଗୁଣରେ ମୁଗ୍ଧ ହୋଇ ତାକୁ ଏକ ଲୟରେ ଚାହିଁରହିଥିବାର ସେ ଦେଖିପାରିଲା । ତାକୁ ଖୁବ୍ ଲାଜ ମାଡ଼ିଲା । ଠିକ୍ ଏଇ ସମୟରେ ଦୂରରୁ ଏକ କୋଳାହଳ ଶୁଭିଲା । ଦେଖାଗଲା ଜଞ୍ଜିର ଛିଣ୍ଡାଇ ଏକ ମତ୍ତହସ୍ତୀ ତା'ରି ଆଡ଼କୁ ଖୁବ୍ ବେଗରେ ଦୌଡ଼ି ଦୌଡ଼ି ଆସୁଛି । ଧାତ୍ରେୟୀ ବୁଝିପାରୁ

ନ ଥାଏ କ'ଣ କରିବ । ହାତୀ ଏତେ ପାଖରେ ପହଞ୍ଚିଗଲା ଯେ ଆଉ ମୁହୂର୍ତ୍ତିକରେ ତା'ର ପ୍ରାଣ ଯା'ନ୍ତା । ଏଇ ସମୟରେ ସୋମଦତ୍ତ ତାକୁ ହଠାତ୍ ହାତରେ ଉଠାଇନେଇ ଦୂରକୁ ଚାଲିଗଲା ଓ ଲୋକମାନେ ଯେଉଁଠି ଦଳବାନ୍ଧି ଠିଆ ହୋଇଥିଲେ ସେଇଠି ପହଞ୍ଚିଲା । ଧାନ୍ୟେଶ୍ୱରୀ ଯୁବକଟିର ପରିଚୟ ପାଇବାକୁ ଚାହୁଁଥିଲା; କାରଣ ସେ ତା'ର ଜୀବନ ରକ୍ଷା କରିଛି । ହେଲେ ସେଇଆଡ଼କୁ ହାତୀ ପୁଣି ଆସୁଥିବାର ଦେଖି ସିଏ ଯୁଆଡ଼େ ପଳାଇଲେ । ସୋମଦତ୍ତ ପରେ ବହୁତ ଖୋଜିଲା, ହେଲେ ଧାନ୍ୟେଶ୍ୱରୀକୁ ଆଉ ପାଇଲା ନାହିଁ । କାରଣ ପ୍ରିୟସଖୀ ମନ୍ଦାରବତୀର ବିବାହମୁହୂର୍ତ୍ତ ପାଖେଇ ଆସୁଥିବାରୁ ଅପେକ୍ଷା କରିବା ପାଇଁ ତା'ର ଆଉ ସମୟ ନ ଥିଲା ।

ଧାନ୍ୟେଶ୍ୱରୀକୁ ଜାଣିବା ନିମନ୍ତେ ସୋମଦତ୍ତ ମନରେ କୌତୂହଳ ଜନ୍ମିଲା । ସେ ଅନ୍ୟମନସ୍କ ଭାବରେ ଚାଲି ଚାଲି ମନ୍ଦାର ଆଡ଼କୁହିଁ ଯାଉଥାଏ । ହଠାତ୍ ବାଟ ବରଗଛରେ ଓହଳଥିବା ଶଶିଭୂଷଣର ଦେହକୁ ସେ ଦେଖିପାରି ଚଟାପଟ୍ ଦଉଡ଼ି କାଟି ତାକୁ ତଳକୁ ଆଣିଲା । ଦେଖିଲା ସେ ପର୍ଯ୍ୟନ୍ତ ତା'ର ଜୀବନ ଅଛି । ତତ୍କ୍ଷଣାତ୍ ସେ ତାକୁ ବଞ୍ଚାଇବା ପାଇଁ ନାନା ଉପଚାର ଆରମ୍ଭ କରିଦେଲା । କିଛିସମୟ ପରେ ଶଶିଭୂଷଣର ଚେତା ଫେରିଲା । ସେ ଉଠିବସି ସୋମଦତ୍ତକୁ କହିଲା, "ଭାଇ, ତୁମେ କିଏ ?





ମନ୍ଦିର ଭିତରେ ଦେବତାଙ୍କ ମୂର୍ତ୍ତି ପଛପଟେ ଲୁଚି ସବୁ ଦେଖିବା ।" ଦୁହେଁ ସେଠାରେ ଯାଇ ଲୁଚିଲେ ।

ମଦନାବତୀ ସେଠାରେ ଅନ୍ୟ ସଖୀମାନଙ୍କୁ ବାହାରେ ରଖି ନିଜେ ମନ୍ଦିର ଭିତରକୁ ଗଲା ପୂଜା କରିବାକୁ । ମନ୍ଦିରର ଦ୍ୱାର ବନ୍ଦ କରି ଧୀରେ ଧୀରେ ରୁଦ୍ଧଗଳାରେ କହିଲା, "ହେ କାମଦେବ, ମୁଁ ଜଣେ ଯୁବକକୁ ପ୍ରେମ କରୁଛି । କିନ୍ତୁ ତୁମେ ଆଉ ଜଣକ ସହିତ କାହିଁକି ମୋର ବିବାହ ଦେଉଛ ? ଯଦି ଏ ଜନ୍ମରେ ମୋର ଇଚ୍ଛା ପୂରଣ ନ ହେଲା ତେବେ ଏତିକି ଅନୁଗ୍ରହ କର ପର ଜନ୍ମରେ ମୁଁ ଶଶିଭୂଷଣର ପତ୍ନୀ ହେବି ।" ଏତିକି କହି ସେ ଲୁଗା-ଗୁଡ଼େଇ ଗଳାରେ ଫାଶୀ ଦେଇ ମରିବାକୁ ଯାଉଥିଲା । ଠିକ୍ ସେତିକିବେଳେ ଶଶିଭୂଷଣ ମୂର୍ତ୍ତି ପଛରୁ ବାହାରି ଆସି ତାକୁ ସେଥିରୁ ବିରତ କରାଇଲା । ସୋମଦତ୍ତ ମଧ୍ୟ ମୂର୍ତ୍ତି ପଛରୁ ବାହାରି ଆସି କହିଲା, "ଏବେ କଥାବାର୍ତ୍ତା କରିବା ପାଇଁ ସମୟ ନାହିଁ । ବର୍ତ୍ତମାନ ସନ୍ଧ୍ୟା ହେଲାଣି । ମୁଁ ଏହି ଯୁବତୀର ବସ୍ତ୍ର ପିନ୍ଧି ସଖୀ-ମାନଙ୍କ ସହିତ ଯାଉଛି । ଏହି ଯୁବତୀ ମୋର ପୋଷାକ ପିନ୍ଧି ତୁମ ସହିତ ନଗର ବାହାରକୁ ଯାଉ ଓ ଅନ୍ୟ ଦେଶକୁ ଚାଲିଯାଅ ।"

ସୋମଦତ୍ତ ମଦନାବତୀର ଶାଢ଼ି ପିନ୍ଧି ମଥାରେ

ମୋର ପ୍ରାଣ କାହିଁକି ବା ବଞ୍ଚାଇଲ ? ମୋର ବଞ୍ଚିବାର କୌଣସି ଆଗ୍ରହ ନାହିଁ ।" ତା'ପରେ ସେ ତା'ର ଜୀବନବୃତ୍ତାନ୍ତ ତାକୁ ଶୁଣାଇଲା ।

ସବୁକଥା ଶୁଣିସାରି ସୋମଦତ୍ତ ତାକୁ ବୁଝା-ଇଲା, "ତୁମେ କ'ଣ ପାଗଳ ? ଏଇ କ'ଣ ପୁରୁଷାର୍ଥ ? ମୁଁ ବି ତୁମପରି ଜଣେ ଝିଅକୁ ଖୋଜୁଛି ।" ତା'ପରେ ସେ ମଧ୍ୟ ସେ ଦିନର ଘଟଣାସବୁ କହିଲା ।

ଦୁହେଁ ଏପରି କଥାବାର୍ତ୍ତା ହେବା ସମୟରେ ଦୂରରୁ ମଙ୍ଗଳବାଦ୍ୟ ବଜାଇ ମଦନାବତୀ ତା'ର ସଖୀଗହଣରେ କାମଦେବଙ୍କୁ ପୂଜା କରିବା ପାଇଁ ମନ୍ଦିରକୁ ଆସୁଥିଲା । ସୋମଦତ୍ତ କହିଲା, "ଚାଲ

ଓଢ଼ଣା ଦେଇ ମନ୍ଦିର ବାହାରକୁ ଚାଲିଆସିଲା । ସଖୀମାନେ ଗୀତ ଗାଇ ବାଜା ବଜାଇ କନ୍ୟାକୁ ଧରି ଘରକୁ ଫେରିଆସିଲେ । ସେମାନେ ଯିବାର କିଛିସମୟ ପରେ ମନ୍ଦାରବତୀ ପୁରୁଷ ପୋଷାକରେ ଶଶିଭୂଷଣ ସହିତ ବାହାରକୁ ଆସି ସାରାରାତି ଜଙ୍ଗଲ ବାଟରେ ଚାଲି ଚାଲି ଅଚଳପୁର ନାମକ ଗାଁରେ ପହଞ୍ଚିଲେ । ସେଠାରେ ଜଣେ ବ୍ରାହ୍ମଣ ତା' ଘରେ ସେମାନଙ୍କୁ ଆଶ୍ରୟ ଦେଲା ଓ ସେମାନେ ଶାସ୍ତ୍ରମତେ ସେଠାରେ ବିବାହ କଲେ ।

ଇତମଧ୍ୟରେ ମନ୍ଦାରବତୀର ବେଶରେ ସୋମଦତ୍ତ କନ୍ୟା ସାଜି ବସିଥାଏ । ଧାନ୍ୟେଶ୍ୱରୀ ଦେଖିଲା ବିବାହ ପୂର୍ବରୁ ନିଜକଥା ପ୍ରିୟସଖୀକୁ କହିବାକୁ ଆଉ ସମୟ ମିଳିବ ନାହିଁ । ତେଣୁ ସେ ସଖୀ ମନ୍ଦାରବତୀ ରୂପୀ ସୋମଦତ୍ତର ହାତ ଧରି ଗୋଟିଏ ଏକାନ୍ତ କକ୍ଷକୁ ଡାକିନେଇ ତା'ର ସମଗ୍ର ଘଟଣା ବିଷୟରେ ଶୁଣାଇଲା । ଓଢ଼ଣା ଭିତରୁ ସୋମଦତ୍ତ ଧାନ୍ୟେଶ୍ୱରୀକୁ ଚିହ୍ନିପାରି ଅତି ଆଶ୍ଚର୍ଯ୍ୟ ଓ ଆନନ୍ଦ ହୋଇ ଭାବିଲା, "ମୁଁ ସ୍ୱପ୍ନ ଦେଖୁଛି ନା କ'ଣ ? ନା ଇଏ ଭଗବାନଙ୍କର ବିଶେଷ ଅନୁଗ୍ରହ ?"

ଧାନ୍ୟେଶ୍ୱରୀ କହିଚାଲିଲା, "ସଖୀ ମୁଁ ଜାଣୁଛି ତୁମେ ଯାହାକୁ ବିବାହ କରୁଛ ସେ ତୁମର ପ୍ରିୟ ପ୍ରେମିକ ନୁହେଁ । ତେବେ ମନରେ ଯେତେବେଳେ ବହୁତ କଷ୍ଟ ହେବ ମୋ କଥା ଭାବି ନିଜକୁ ସାନ୍ତ୍ୱନା ଦେବ । କାରଣ ମୁଁ ମଧ୍



ସେଇ ଦୃଷ୍ଟିରୁ ଏକ ଅଭାଗିନୀ । ଯେହେତୁ ମୋ ମନରେ ଯେଉଁ ଯୁବକ ପ୍ରତି ପ୍ରେମ ଭାବ ଜନ୍ମିଛି ମୁଁ ତା' ବିଷୟରେ କିଛି ଜାଣେ ନାହିଁ । ତୁମେ ତ କେବେ ହେଲେ ତୁମର ପ୍ରିୟତମକୁ ଦେଖିପାରିବ । କିନ୍ତୁ ମୋ କ୍ଷେତ୍ରରେ ତାହା ବିଡ଼ମ୍ବନା ମାତ୍ର ।" ଏସବୁ କଥା ସହିତ ଧାତ୍ରେୟୀ ସେଦିନର ଘଟଣା ସଂପୂର୍ଣ୍ଣ ବର୍ଣ୍ଣନା କଲା ।

ଧାତ୍ରେୟୀର ସବୁକଥା ଶୁଣି ସୋମଦତ୍ତ ପରମ ଆନନ୍ଦିତ ହୋଇଉଠିଲା ଓ ଓଢ଼ଣା ଖୋଲି ନିଜକୁ ପ୍ରକାଶ କଲା । ଏକଥା ଦେଖି ଧାତ୍ରେୟୀର ଆଶ୍ଚର୍ଯ୍ୟ ଓ ଆନନ୍ଦର ସୀମା ରହିଲା ନାହିଁ । ସେ ଧାତ୍ରେୟୀକୁ ମନ୍ଦାରବତୀ ଓ ଅନ୍ୟସମସ୍ତ ଘଟଣା ଶୁଣାଇଲା । ତା'ପରେ ସେ କହିଲା, "ଏପରି କଥାବାର୍ତ୍ତା ହେବା ପାଇଁ ଆଉ ସମୟ ନାହିଁ । ଆଉ ଅଳ୍ପସମୟ ପରେ ସମସ୍ତ ରହସ୍ୟ ଧରାପଡ଼ିଯିବ । ତା' ପୂର୍ବରୁ ଆମେ ମଧ୍ୟ ଏଠାରୁ ଲୁଆଡ଼େ ଖସିପଳାଇବା । ସେଥିପାଇଁ କିଛି ବ୍ୟବସ୍ଥା କର ।"

ତା'ପରେ ଧାତ୍ରେୟୀ ତା'ର ସବୁ ଅଳଙ୍କାର ଗୋଟିଏ ଲୁଗାରେ ବାନ୍ଧିଲା ଓ ଆଉ କିଛି ଲୁଗାପଟା ନେଇ ମନ୍ଦାରବତୀ ବେଶରେ ଥିବା ସୋମଦତ୍ତକୁ ନେଇ ବଗିଚାରେ ବୁଲିବାକୁ ଗଲା । ସେଠାରୁ ଏକ ଗୁପ୍ତ ରାସ୍ତା ଦେଇ ବାହାରକୁ ଆସି ଦୁହେଁ ସହଜରେ ପଳାୟନ କଲେ । କିଛିଦିନ ଚାଲି ଚାଲି ବହୁତ ଦୂର ଦେଶରେ ଯାଇ ପହଞ୍ଚିଲେ । ସେଠାରେ ଦୁହେଁ ଶାସ୍ତ୍ରମତେ ବିବାହ କରି, ଘର କରି ସୁଖରେ ବସବାସ କରି ରହିଲେ ।

ମନ୍ଦାରବତୀ ଓ ଶଶିଭୂଷଣ ସହ ମଧ୍ୟ ସେମାନଙ୍କ ସାକ୍ଷାତ୍ ହେଲା । ଦୁଇ ଦମ୍ପତି ସମୟ ବୁଝି ସ୍ୱଦେଶକୁ ବାହୁଡ଼ିଆସିଲେ । ଦୁଇ କନ୍ୟାଙ୍କୁ ରହସ୍ୟଜନକ ଭାବରେ ହରାଇ ଦୁଃଖରେ ଥିବା ପିତାମାତାମାନେ କନ୍ୟାମାନଙ୍କ ସହ ଜାମାତା ଦୁହିଁଙ୍କୁ ଦେଖି ହୃଦୟଦେଇ ସ୍ୱାଗତ କଲେ ।





# ପରଶୁରାମ

କୃତବୀର୍ଯ୍ୟଙ୍କ ପୁତ୍ର କାର୍ତ୍ତବୀର୍ଯ୍ୟାର୍ଜୁନ ଥିଲେ ଜଣେ ବିଖ୍ୟାତ ରାଜା । ଥରେ ପରଶୁରାମଙ୍କ ପିତା ଯମଦଗ୍ନିଙ୍କ ଆଶ୍ରମରେ ସେ ସସୈନ୍ୟେ ଆସି ପହଞ୍ଚିଲେ । ଯମଦଗ୍ନି ଯଥା ବିଧି ଅତିଥି-ସତ୍କାର କଲେ । ହେଲେ ତାଙ୍କର ସୁନ୍ଦର କାମଧେନୁଟି ଦେଖି ରାଜା ସେଇଟି ତାଙ୍କୁ ମାଗିଲେ । ମୁନି ଯମଦଗ୍ନି ସେଥିରେ ରାଜି ନ ହେବାରୁ ରାଜା ତାଙ୍କୁ ରାଗରେ ମାରିପକାଇଲେ ଓ ଆଶ୍ରମର ସବୁକିଛି ଛିନ୍ନଛତ୍ର କରି ଫୋପାଡ଼ି-ଦେଇ ଚାଲିଗଲେ ।

ରାଜା ଅହମିକାପ୍ରମତ୍ତ ହୋଇ ଯାହା କଲେ, ତାହା ଯେ ଅତ୍ୟନ୍ତ ଗର୍ହିତ, ଏଥିରେ ସନ୍ଦେହ ନାହିଁ । ପ୍ରାଚୀନକାଳରେ ପରମ୍ପରା ଅନୁସାରେ ରାଜାମାନେ ମୁନିଋଷିମାନଙ୍କ ପ୍ରତି ଅତ୍ୟନ୍ତ ଶ୍ରଦ୍ଧା-ଶୀଳ ହେବା କଥା । କିନ୍ତୁ କାର୍ତ୍ତବୀର୍ଯ୍ୟାର୍ଜୁନ କ୍ଷଣକ ସକାଶେ ନିଜ କର୍ତ୍ତବ୍ୟ ବିସ୍ମୃତ ହେବା ସଙ୍ଗେ ସଙ୍ଗେ ଭୀଷଣ ଅନ୍ୟାୟ କଲେ ।

ସେତେବେଳେ ରାମ (ପରଶୁରାମ) ଯାଇଥା'ନ୍ତି ବଣକୁ ଯଜ୍ଞକାଷ୍ଠ ଓ ଫଳମୂଳ ସଂଗ୍ରହ କରିବା ପାଇଁ । ସେଠାରେ ତାଙ୍କ ମନ ଖୁବ୍ ବ୍ୟାକୁଳ ହେଲା । ସେ ବୁଝିପାରିଲେ କିଛି ଗୋଟାଏ ଖରାପ ଘଟିଛି । ତତ୍କ୍ଷଣାତ୍ ସେ ଆଶ୍ରମକୁ ଫେରିଆସିଲେ । ଦେଖିଲେ ମାତା ରେଣୁକା ସ୍ୱାମୀଙ୍କର ଶବ ଧରି ମଥା କୋଡ଼ି କାନ୍ଦୁଛନ୍ତି । ପୁଅକୁ ଦେଖି ସେ ଶୋକରେ ଅଧୀର ହୋଇ ଏକୋଇଶ ଥର ହୃଦୟରେ ହାତ ବାଡ଼େଇ କାନ୍ଦି କାନ୍ଦି ସମସ୍ତ ଘଟଣା କହିଲେ । ସେଇଠୁ ରାମ ଶପଥ କଲେ ଏକୋଇଶବାର ପୃଥିବୀ ନିକ୍ଷତ୍ରିୟ କରିବେ ।

ତା'ପରେ ସେ ପିତାଙ୍କର ଶବସଂସ୍କାର କରି-

ବାଲୁ ବାହାରିଛନ୍ତି ଏଇ ସମୟରେ ସୌଭାଗ୍ୟ-ବଶତଃ ଭୃଗୁ ଆସି ସେଠି ପହଞ୍ଚିଲେ ଓ ଯମଦଗ୍ନିଙ୍କୁ ଜୀବନ୍ୟାସ ଦେଲେ । ପିତାଙ୍କୁ ଜୀବିତ ଦେଖି ରାମ ଖୁସୀ ହେଲେ ଓ ନିଜର ଶପଥ କଥା କହିଲେ । ତାଙ୍କର ଭୟଙ୍କର ପ୍ରତିଶୋଧ କଥା ଶୁଣି ଯମଦଗ୍ନି ତାଙ୍କ କ୍ରୋଧ ଶାନ୍ତ କରିବା ପାଇଁ ଚେଷ୍ଟା କଲେ । କିନ୍ତୁ ରାମ କହିଲେ ଯେ ଅପରାଧ କ୍ଷେତ୍ରରେ ଉଦାସୀନ ରହିବା ଅର୍ଥ ଅପରାଧକୁ ଉତ୍ସାହିତ କରିବା । ତେଣୁ ବିନା କାରଣରେ ହତ୍ୟା କରିଥିବା ସେଇ ରାଜାକୁ ଦଣ୍ଡ ଦେବାକୁ ହେବ ।

ରାମଙ୍କର ଦୃଢ଼ତା ଦେଖି ଯମଦଗ୍ନି କହିଲେ ଯେ କିଛି କରିବା ପୂର୍ବରୁ ସେ ବ୍ରହ୍ମାଙ୍କୁ ସବୁ ପଚାରି କରିବା ଉଚିତ । ରାମ ତା'ପରେ ବ୍ରହ୍ମାଙ୍କ ପାଖରେ ପହଞ୍ଚି ସବୁ ଘଟଣା ବର୍ଣ୍ଣନା କଲେ ଓ ବ୍ରହ୍ମାଙ୍କର ଏଥିରେ ମତ କ'ଣ ପଚାରିଲେ । ବ୍ରହ୍ମା ଏ କଥାକୁ ଆଦୌ ପସନ୍ଦ ନ କଲେ ମଧ୍ୟ ବାହାରେ ଅନ୍ୟ ପ୍ରକାରରେ କହିଲେ ଯେ ଏ ବିଷୟରେ ଶିବଙ୍କର ମତ ନେବା ଉଚିତ ହେବ ।

ଶିବପାର୍ବତୀ ଦୁହିଁଙ୍କୁ ଯାଇ ଦେଖା କରି ସେ ସବୁ କଥା ନିବେଦନ କଲେ । ପାର୍ବତୀ କହିଲେ, "ଦେଖ ଶିବଙ୍କ କୃପାରୁ ନ ହୋଇ ପାରିବ ଏପରି କାର୍ଯ୍ୟ ନାହିଁ । କିନ୍ତୁ ସେଥିପାଇଁ ଯେଉଁ ଅସ୍ତ୍ରଶସ୍ତ୍ର ଦରକାର ତାହା ତୁମ ପାଖରେ ଅଛି କି ?"



ଉପଯୁକ୍ତ ଅସ୍ତ୍ର ରାମଙ୍କ ପାଖରେ ନ ଥିବାରୁ ଶିବ ବାଧ୍ୟ ହୋଇ ଦିବ୍ୟ ଅସ୍ତ୍ର ଓ କବଚ ଦେଇ-ଦେଲେ । ଶିବପାର୍ବତୀଙ୍କଠାରୁ ବିଦାୟ ନେଇ ରାମ ଫେରିଲେ । ବାଟରେ ଗୋଟିଏ ପୁଷ୍କରିଣୀ କୂଳରେ ଅସ୍ତ୍ରଗୁଡ଼ିକ ରଖି ସେ ଧ୍ୟାନରେ ବସିଲେ । ସେତେବେଳେ ଦୁଇଟି ହରିଣ ଦୌଡ଼ି ଦୌଡ଼ି ସେଠି ପହଞ୍ଚିଲେ ଓ ସେଠାରେ ପାଣି ପିଇଲେ । ମନେ ହେଉଥିଲା କେହି ସେମାନଙ୍କୁ ଗୋଡ଼ାଉଛି ।

ରାମ କୌଣସି ବ୍ୟକ୍ତିକୁ ଦେଖିପାରିଲେ ନାହିଁ । କିନ୍ତୁ ହରିଣୀଟି ହରିଣକୁ କହିଲା, "ଏବେ ଡରିବାର କ'ଣ ଅଛି । ଯିଏ ଏଠାରେ ଧ୍ୟାନରେ ବସିଛନ୍ତି ସେ ରାମ । ସେ ଆମକୁ ରକ୍ଷା କରିବେ । କିନ୍ତୁ ଏଠାରେ ଧ୍ୟାନ ନ କରି ଯଦି ସେ ଅଗସ୍ତି ଆଶ୍ରମକୁ ଯାଇ କୃଷ୍ଣାମୃତ ସ୍ତୋତ୍ର ଶୁଣନ୍ତି ତେବେ ତାଙ୍କୁ କୃଷ୍ଣକବଚ ପ୍ରାପ୍ତ ହେବ ।"

ଏସବୁ ଶୁଣି ରାମ ଧ୍ୟାନରୁ ଉଠିଲେ ଓ ଅସ୍ତ୍ରଶସ୍ତ୍ର ନେଇ ଅଗସ୍ତି ଆଶ୍ରମକୁ ଗଲେ । ଗଲାବେଳେ ହରିଣମାନଙ୍କୁ ବଧ କରିବାକୁ ଆସୁଥିବା ଶିକାରିକୁ ବଧ କଲେ । ପରେ ଅଗସ୍ତ୍ୟ ଆଶ୍ରମ ଯାଇ ହରିଣଙ୍କ କଥା ଅନୁସାରେ କୃଷ୍ଣକବଚ ପ୍ରାପ୍ତି କଲେ ।

ତା'ପରେ ସେ ନର୍ମଦା ନଦୀରେ ସ୍ନାନ କରି କାର୍ତ୍ତବୀର୍ଯ୍ୟାର୍ଜୁନ ପାଖକୁ ଯୁଦ୍ଧକାମନା କରି ଖବର ପଠାଇଲେ ।



କାର୍ତ୍ତବୀର୍ଯ୍ୟ ମଧ୍ୟ ଉତ୍ତରରେ ଖବର ପଠାଇଦେଲେ, "ବ୍ରାହ୍ମଣ ଯାହା ମାଗେ ମୁଁ ମନା କରେ ନାହିଁ । ଯମଦଗ୍ନିଙ୍କ ପୁତ୍ର ଯୁଦ୍ଧ ମାଗୁଛନ୍ତି ତ ମୁଁ ତାଙ୍କର ଇଚ୍ଛା ପୂରଣ କରିବି ।"

ତା'ପରେ କେବଳ ତାଙ୍କର ସୈନ୍ୟମାନେ ରାମଙ୍କ ସହ ଯୁଦ୍ଧ କରିବାକୁ ଗଲେ । ମୁହୂର୍ତ୍ତେ ମାତ୍ର ସମୟରେ ସେମାନଙ୍କୁ ସେ ଛିନ୍ନଛିନ୍ନ କରିଦେଲେ ।

ଏହା ପରେ ଅନ୍ୟ କ୍ଷତ୍ରିୟମାନେ ଓ କେତେକ ରାଜା ମିଳି ତାଙ୍କୁ ଆକ୍ରମଣ କଲେ । ହେଲେ ସମସ୍ତେ ତାଙ୍କ ଦ୍ୱାରା ପରାସ୍ତ ହେଲେ । ତା'ପରେ ମତ୍ସ୍ୟଦେଶ, ମଗଧ, ବିଦର୍ଭ, କାନ୍ୟକୁବ୍ଜ, ସୌରାଷ୍ଟ୍ର, ଇତ୍ୟାଦିର ରାଜାମାନେ ସମସ୍ତେ ତାଙ୍କ ସହିତ ଯୁଦ୍ଧରେ ପ୍ରାଣପାତ କଲେ ।

ସୁଚନ୍ଦ୍ର ନାମକ ରାଜା ରାମଙ୍କ ଉପରକୁ ତ୍ରିଶୂଳ ଫୋପାଡ଼ିଲେ । କିନ୍ତୁ ତାହା ପୁଷ୍ପମାଳା ହୋଇ ରାମଙ୍କ ବେକରେ ପଡ଼ିଲା । ସେତେବେଳେ କାଳୀମାତାଙ୍କ କୃପାରୁ ସେ ଜାଣିପାରିଲେ ସୁଚନ୍ଦ୍ର ପାଇଁ କେବଳ ଆଗ୍ନେୟାସ୍ତ୍ରହିଁ ପ୍ରୟୋଜନ । ସେ ତାହା ପ୍ରୟୋଗ କଲେ । ଓ ସୁଚନ୍ଦ୍ର ମରିଗଲେ ।

ଅବଶେଷରେ ଆସିଲେ କାର୍ତ୍ତବୀର୍ଯ୍ୟ । ପ୍ରଥମେ ସେ ତ୍ରିଶୂଳ ପ୍ରୟୋଗ କଲେ । ସେଥିରେ ରାମ ଅଚେତନ ହୋଇଗଲେ । ଏହି ଘଟଣାରେ ନିଜେ ଶିବ ସେଠାରେ ପହଞ୍ଚି ତାଙ୍କୁ ପୁଣି ସଚେତନ କରାଇଲେ ଓ ଶକ୍ତି ଦେଲେ । ଶିବଙ୍କ ଶକ୍ତିରେ ଶକ୍ତିମାନ୍ ହୋଇ ସେ ଶିବକବଚ ଧରି କାର୍ତ୍ତବୀର୍ଯ୍ୟଙ୍କ ଉପରକୁ ଶକ୍ତିଶାଳୀ ବାଣସବୁ ପ୍ରୟୋଗ କଲେ । ସେଥିରେ ଆଉ ତାଙ୍କର ଜୀବନର ଆଶା ନ ଥିଲା । କ୍ରମେ ସେ ଶକ୍ତିହୀନ ହୋଇପଡ଼ିଲେ ଓ ଶେଷରେ ମରିଗଲେ । ତାଙ୍କ ପରେ ପରେ ତାଙ୍କ ପୁଅମାନେ ମଧ୍ୟ ରାମଙ୍କ ସହିତ ଯୁଦ୍ଧ କରି ମରିଗଲେ ।

(କ୍ରମଶଃ)





ଭରତ-କାହାଣୀ

# ମହା ପ୍ରସ୍ଥାନ

ମହାଭାରତ ଯୁଦ୍ଧରେ ବିଜୟ ଲାଭ ଅନ୍ତେ ପାଣ୍ଡବମାନେ ରାଜ୍ୟଶାସନ କରି ପ୍ରଜାବର୍ଗଙ୍କ ପ୍ରଭୂତ ମଙ୍ଗଳ ସାଧନ କଲେ । କିନ୍ତୁ କ୍ଷମତା ଓ ଐଶ୍ୱର୍ଯ୍ୟ ସେମାନଙ୍କୁ ବେଶୀ ଦିନ ଆକୃଷ୍ଟ କରି ରଖି ପାରିଲା ନାହିଁ । ଯୁଧିଷ୍ଠିର ସଶରୀରରେ ସ୍ୱର୍ଗାରୋହଣ ଉଦ୍ଦେଶ୍ୟରେ ରାଜ୍ୟ ତ୍ୟାଗ କରିବାକୁ ମନସ୍ଥ କଲେ ।

ତେଣୁ ପୌତ୍ର ପରୀକ୍ଷିତଙ୍କୁ ସିଂହାସନରେ ବସାଇ ଯୁଧିଷ୍ଠିର ତାଙ୍କର ଅଭିଷେକ କରାଇଲେ । ନଗରୀ ହେଲା ଉତ୍ସବ-ମୁଖର । ସାମନ୍ତ ଓ ବନ୍ଧୁରାଜାମାନେ ଆସି ତରୁଣ ରାଜାଙ୍କୁ ଅଭିନନ୍ଦନ ଜଣାଇଲେ । ଯୁଧିଷ୍ଠିରଙ୍କର ପାର୍ଥିବ କର୍ତ୍ତବ୍ୟ ଶେଷ ହେଲା ।





ଯୁଧିଷ୍ଠିର ହିମାଳୟ ଅଭିମୁଖେ ନିଷ୍କ୍ରାନ୍ତ ହେଲେ । ତାଙ୍କୁ ଅନୁସରଣ କରି ଚାଲିଲେ ତାଙ୍କର ଭ୍ରାତାଗଣ ତଥା ପତ୍ନୀ ଦ୍ରୌପଦୀ । ସେତେବେଳେ ସେମାନେ ସନ୍ନ୍ୟାସୀ । ପଛରେ ରହିଲା ବିରାଟ ନଗର ଏବଂ ବିପୁଳ ଧନ-ସମ୍ପଦ ।



ହିମାଳୟ ଆରୋହଣ ଆରମ୍ଭ ହେଲା । ସେ ଯାତ୍ରା ଯେତିକି ଦୀର୍ଘ, ସେତିକି କଷ୍ଟସାଧ୍ୟ । ହିମାଳୟ କେତେ ଯୋଗୀ, ତପସ୍ୱୀ, ଦେବ ଦେବୀ ଏବଂ ଭିନ୍ନ ଭିନ୍ନ ଆଧିଭୌତିକ ଶକ୍ତିମାନଙ୍କର ନିବାସସ୍ଥଳ । ସେମାନେ ଗୋଟିଏ ପରେ ଗୋଟିଏ ପୂତପବିତ୍ର ସ୍ଥଳ ଅତିକ୍ରମ କରି ଚାଲିଥା'ନ୍ତି । ପ୍ରଥମେ ପାର୍ବତ୍ୟ-ମାର୍ଗରେ ପ୍ରାଣତ୍ୟାଗ କଲେ ଦ୍ରୌପଦୀ । କ୍ରମେ ଜଣକ ପରେ ଜଣେ ସହଦେବ, ନକୁଳ, ଅର୍ଜୁନ ଏବଂ ପରେ ଭୀମ ବି ଢଳିପଡ଼ିଲେ । ଏକାକୀ ଯାତ୍ରା ଅବ୍ୟାହତ ରଖିଲେ ଯୁଧିଷ୍ଠିର ।

ନିଃସଙ୍ଗ ଯୁଧିଷ୍ଠିର ହଠାତ୍ ଲକ୍ଷ୍ୟ କଲେ, କୁକୁରଟିଏ କାହୁଁ ଆସି ତାଙ୍କୁ ଅନୁସରଣ କରିଲାଗିଛି । ସେ ଦୁର୍ଗମ ପଥରେ କୁକୁରଟି ହେଲା ତାଙ୍କର ଏକମାତ୍ର ସାଥୀ । ସେମାନେ ଅଗ୍ରସର ହେଲେ ।





ଅବଶେଷରେ ହିମାଳୟର ଶୀର୍ଷ ଶୃଙ୍ଗରେ ଉପନୀତ ହେଲେ ଯୁଧିଷ୍ଠିର୍ । ସେତେବେଳେ ସ୍ୱର୍ଣ୍ଣପ୍ରଭ ରଥ ସହ ତାଙ୍କ ଆଗରେ ଆବିର୍ଭୂତ ହେଲେ ଇନ୍ଦ୍ର । ସେ ଆସିଥିଲେ ଯୁଧିଷ୍ଠିରଙ୍କୁ ସ୍ୱର୍ଗକୁ ନେଇଯିବା ମାନସରେ । କିନ୍ତୁ ସାଥୀ କୁକୁରକୁ ଛାଡ଼ି ଯୁଧିଷ୍ଠିର ଯିବାକୁ ପ୍ରସ୍ତୁତ ନ ଥିଲେ ।

ଇନ୍ଦ୍ର କୁକୁରକୁ ନେଇଯିବାକୁ ପ୍ରସ୍ତୁତ ନ ଥିଲେ । ଯୁଧିଷ୍ଠିରଙ୍କ ଦୁଃଖନଷ୍ଟସ୍ୱ ସାଥୀ କୁକୁରକୁ ଛାଡ଼ି ସେ ଯିବେ ନାହିଁ । ହଠାତ୍ କୁକୁର ଉଭେଇ ଯାଇ ସେଠାରେ ଆବିର୍ଭୂତ ହେଲେ ଧର୍ମ । ଯୁଧିଷ୍ଠିରଙ୍କୁ ସେ ପରୀକ୍ଷା କରୁଥିଲେ । ଯୁଧିଷ୍ଠିର ଉତ୍ତୀର୍ଣ୍ଣ ହେଲେ ।





ସ୍ୱର୍ଗରେ ଯୁଧିଷ୍ଠିରଙ୍କୁ ସ୍ୱାଗତ ଜଣାଇଲେ ଦେବଗଣ । କିନ୍ତୁ ସେଠାରେ ଦ୍ରୌପଦୀ ଏବଂ ଭ୍ରାତୃଗଣଙ୍କୁ ନ ଦେଖି ଯୁଧିଷ୍ଠିର ବିସ୍ମିତ ହେଲେ । ସେତେବେଳେ ତାଙ୍କୁ କୁହାଗଲା ଯେ ସେମାନେ ନର୍କରେ, ସେତେବେଳେ ସେ ମଧ୍ୟ ସେଠାକୁ ଯିବାକୁ ଅଡ଼ିବସିଲେ । ତାଙ୍କୁ ସେଠାକୁ ନିଆଗଲା ।

ନର୍କର ଦ୍ୱାରଦେଶରେ ଉପସ୍ଥ ହୋଇ ସେ ଦେଖିଲେ ସେପାଖର ଦାରୁଣ ଲୋମହର୍ଷକ ପରିସ୍ଥିତି । ତେବେ, ସେତେବେଳକୁ ତାଙ୍କର ଚାରିଭ୍ରାତା ଓ ଦ୍ରୌପଦୀ ସାମାନ୍ୟ ନର୍କଭୋଗ ଅନ୍ତେ ସ୍ୱର୍ଗକୁ ଚାଲିଯାଇଥିଲେ । ତାଙ୍କର ନର୍କଦର୍ଶନ ଯୋଗ ଥିଲା । କାରଣ ଯୁଦ୍ଧବେଳେ ସେ ଅଳ୍ପ ମିଥ୍ୟାଚାର କରିଥିଲେ ।





ଯୁଧିଷ୍ଠିର ଚିରଦିନ ପାଇଁ ସ୍ୱର୍ଗକୁ ପ୍ରତ୍ୟାବର୍ତ୍ତନ କଲେ । ମାନବ ଦେହ ଧରି, କର୍ମରେ ଉଦ୍ବୁଦ୍ଧ ମଧ୍ୟ ସତ୍ୟବାଦୀ ଓ ପବିତ୍ର ରହିବା ସମ୍ଭବ, ଯୁଧିଷ୍ଠିରଙ୍କ ଅମର ଜୀବନୀ ତାହାହିଁ ପ୍ରତିପାଦିତ କରୁଛି ।



# ଖାଣ୍ଟି ହୀରା

ଅନେକ ଦିନ ପୂର୍ବର କଥା । ଥରେ ସିଦ୍ଧିପୁର ଗ୍ରାମର ବାସିନ୍ଦା ନାଗରାଜ ଓ କୃଷ୍ଣଦାସ ନାମକ ଦୁଇବନ୍ଧୁ ତୀର୍ଥାଟନରେ ବାହାରିଲେ । ସେମାନେ ଗ୍ରାମରୁ ଘୋଡ଼ା ଚଢ଼ି ପ୍ରଥମେ କାଶୀ ଯାଇ ଶ୍ରୀବିଶ୍ୱେଶ୍ୱରଙ୍କୁ ଦର୍ଶନ କଲେ । ସେଠାରୁ ତ୍ରିବେଣୀ ସଙ୍ଗମରେ ଯାଇ ସ୍ନାନ କରି ଦୁଇଟି ଗଡ଼ୁରେ ଗଙ୍ଗାଜଳ ଭରି ଫେରିଆସିଲେ ।

ରାସ୍ତାରେ ଦେଖିଲେ ଗୋଟିଏ ଗଛ ତଳେ ଏକ ବୃଦ୍ଧ ଦମ୍ପତି ବସିଛନ୍ତି । ବୃଦ୍ଧା ଯାତ୍ରୀମାନଙ୍କଠାରୁ କିଛି ଗଙ୍ଗାଜଳ ମାଗୁଥାଏ ସ୍ୱାମୀ ପାଇଁ ।

"ଆମେ ତ ବହୁ ଦୂରରୁ ଆସିଛୁ । ସେଠାରୁ ଏ ଗଙ୍ଗାଜଳ ନେଇଯାଉଛୁ । ତୁମଙ୍କୁ କିପରି ଦେବୁ ।" ନାଗରାଜ କହିଲା ।

କିନ୍ତୁ କୃଷ୍ଣଦାସ ଗଙ୍ଗାଜଳପୂର୍ଣ୍ଣ ନିଜ ଗଡ଼ୁଟି ବୁଢ଼ୀକୁ ଧରାଇଦେଇ କହିଲା, "ମା', ଆପଣ ଏଇ ପବିତ୍ର ଗଙ୍ଗାଜଳ ନିଅନ୍ତୁ ।"

ବୁଢ଼ୀ ଗଡ଼ୁଟି ନେଇ ବୁଢ଼ାକୁ ଦେଲା । ବୁଢ଼ା ଅପୂର୍ବ ଆନନ୍ଦରେ କିଛି ଗଙ୍ଗାଜଳ ଢାଳି ପିଇନେଲା ସତେ ଯେମିତି ସେ ଶକ୍ତି ପାଇଗଲା । ସେଠାରୁ ଉଠି ଠିଆହେଲା ଓ କୃଷ୍ଣଦାସ ପାଖକୁ ଆସି ପ୍ରଣାମ କରି କହିଲା, "ମହାଶୟ ! ଆଜି ଦିନକ ଆମ ଘରେ ଅତିଥି ହୋଇ ରହନ୍ତୁ । ମୋ' ନାମ ବିଶାଳଗୁପ୍ତ । ଘରେ ପହଞ୍ଚିଲେ ମୁଁ ସବୁ କଥା ଶୁଣାଇବି ।" ପୁଣି ନାଗରାଜ ଆଡ଼କୁ ବୁଲିପଡ଼ି କହିଲା, "ଆପଣ ମଧ୍ୟ ତାଙ୍କ ସହିତ ମୋ ଘରକୁ ଆସନ୍ତୁ ।"

ଦୁଇ ବନ୍ଧୁ ନିମନ୍ତ୍ରଣ ପାଇ ବିଶାଳଗୁପ୍ତଙ୍କ ଏକ ବିରାଟ ସୁନ୍ଦର-ଭବନରେ ପହଞ୍ଚିଲେ । ସେଠାରେ ତାଙ୍କର କେତେଜଣ ପରିଚାରକ ବୁଲୁଥା'ନ୍ତି । ସେଠାରେ ପହଞ୍ଚି ଜାଣିଲେ ଯେ ବିଶାଳଗୁପ୍ତଙ୍କ ସ୍ତ୍ରୀ ଭାବରେ ଅଭିନୟ କରିଥିବା ବୃଦ୍ଧାଟି ତାଙ୍କର ଜଣେ ପରିଚାରିକା ।

ସେଇଠୁ ବିଶାଳଗୁପ୍ତ ଆରମ୍ଭ କଲେ ତାଙ୍କ

ଜଗମୋହନ



କାହାଣୀ : "ମୋ' ପିତା ଧନଗୁପ୍ତ ବହୁତ ଧନରତ୍ନ ଉପାର୍ଜନ କରିଥିଲେ । ସେ ମରିବା ପୂର୍ବରୁ ମୋତେ କହିଯାଇଥିଲେ କି ପ୍ରତିବର୍ଷ ଚୈତ୍ରପୂର୍ଣ୍ଣିମାରେ ଜଣେ ସଜ୍ଜନଙ୍କୁ ଗୋଟିଏ ହୀରା ଦାନ କରିବୁ । ମୋ ମତରେ ଆପଣହିଁ ପ୍ରକୃତ ସଜ୍ଜନ ।" କୃଷ୍ଣଦାସଙ୍କୁ ଚାହିଁ ସେ କହିଲେ, "କାଲି ଆପଣ ଫେରିବା ବେଳେ ମୁଁ ଆପଣଙ୍କୁ ହୀରା ଖଣ୍ଡେ ଦେବି । ଆପଣ ତାହା ଗ୍ରହଣ କରି ମୋତେ ଅନୁଗୃହୀତ କରନ୍ତୁ ।"

ଏହି ଅପ୍ରତ୍ୟାଶିତ ଧନଲାଭ ଦେଖି କୃଷ୍ଣଦାସ ଆଶ୍ଚର୍ଯ୍ୟ ହୋଇଗଲା । ହେଲେ ନାଗରାଜ ସେଥି ପାଇଁ ତାକୁ ଈର୍ଷା କଲା ।

ପରଦିନ ବିଶାଳଗୁପ୍ତ କୃଷ୍ଣଦାସ ହାତରେ ହୀରାଟିଏ ଦେଇ କହିଲେ, "ଆପଣ ତ ସିଦ୍ଧିପୁର ଯାଉଛନ୍ତି, ବାଟରେ ନାଗପୁରରେ ସୁଖରାଜ ନାମକ ରତ୍ନବ୍ୟବସାୟୀ ଅଛି । ସେ ଆପଣଙ୍କୁ ଏହି ହୀରାର ମୂଲ୍ୟ ଦେଇଦେବ ।"

ତା'ପରେ ଦୁଇ ବନ୍ଧୁ ବିଶାଳଗୁପ୍ତଙ୍କଠାରୁ ବିଦାୟ ନେଇ ଚାଲିଗଲେ । ଇତି ମଧ୍ୟରେ ନାଗରାଜର ହୀରା ପ୍ରତି ଲୋଭ ଅଧିକରୁ ଅଧିକ ହେଲା । ବାଟରେ ଗୋଟିଏ ଅତିଥିଶାଳାରେ ଦୁହେଁ ବିଶ୍ରାମ କରିବା ବେଳେ ନାଗରାଜ ହୀରାଟି ଚୋରାଇନେଇ ନିଜ ପାଖରେ ରଖିଲା ।

କୃଷ୍ଣଦାସ ହୀରା ଚୋରି କଥା ନାଗରାଜକୁ କହିବାରୁ ସେ ପ୍ରସ୍ତାବ ଦେଲା କି ହୀରା ନ ପାଇବା ପର୍ଯ୍ୟନ୍ତ ସେ ଗାଁ ଛାଡ଼ି ସେମାନେ ଯିବେ ନାହିଁ ।

କିନ୍ତୁ କୃଷ୍ଣଦାସ କହିଲା, "ଏଇ ଅଚିହ୍ନା ଗାଁରେ ଆମକୁ ସାହାଯ୍ୟ କରିବା ଲୋକ ବା କିଏ ? ଛାଡ଼ ହୀରାଟି ମିଳିଥିଲା ଅଚାନକ, ହଜିଗଲା ମଧ୍ୟ ଅଚାନକ ।"

ତା'ପରେ ଦୁହେଁ ନାଗପୁରରେ ପହଞ୍ଚିଲେ । କୃଷ୍ଣଦାସ ସୁଖରାଜ ସହିତ ଦେଖା କରିବାକୁ ଇଚ୍ଛା ପ୍ରକାଶ କରନ୍ତେ ନାଗରାଜ କହିଲା, "ହୀରା ତ ହଜିଗଲା, ଆଉ ତା' ସହିତ ଦେଖା କରିବାରେ ଲାଭ କ'ଣ ?"



"ଏପରି କୁହନା; ଆମରି ବିଶାଳଗୁପ୍ତ ସହ ବନ୍ଧୁତା ପୁଷ୍ପରାଜ ସହ ଦେଖା କରିବା ଦ୍ୱାରା ସମ୍ଭବ ହେବ । ଏପରି ନୁହେଁ ଯେ ଖାଲି ହୀରା ବିକିବା ପାଇଁ ମୁଁ ତାଙ୍କ ଘରକୁ ଯିବ ।" କୃଷ୍ଣଦାସ କହିଲା ।

"ତେବେ ତୁମେ ଯାଇ ଆସ । ମୁଁ ଇତି ମଧ୍ୟରେ ସହରର ବୁଲିଆସିବ ।" ନାଗରାଜ କହିଲା ।

କୃଷ୍ଣଦାସ ଚାଲିଯିବା ପରେ ନାଗରାଜ ଏକ ରତ୍ନବ୍ୟବସାୟୀର ଦୋକାନରେ ପହଞ୍ଚି ହୀରାଟି ଦେଖାଇ କହିଲା, "ଏଇ ହୀରା ପାଇଁ ଆପଣ କେତେ ଦାମ ଦେଇପାରିବେ ?"

ହୀରାଟିକୁ ଦେଖି ଦୋକାନୀ ପଚାରିଲା, "ଏ ହୀରା ଆପଣ କେଉଁଠୁ ପାଇଲେ ?"

"ମୋ ବାପା ଏଇଟି କିଣିଥିଲେ । ମୋର ଟଙ୍କା ଦରକାର ପଡ଼ିବାରୁ ମୁଁ ଏହା ବିକୁଛି ।" ନାଗରାଜ କହିଲା ।

ଦୋକାନୀ ହସି ହସି କହିଲା, "ବୋଧହୁଏ ଆପଣଙ୍କ ବାପାଙ୍କୁ କେହି ଠକାଇଛି । ଇଏ ତ କାଚ ଖଣ୍ଡେ ମାତ୍ର । ଏହା ପଇସାଟିଏ ପାଇଁ ମଧ୍ୟ ଯୋଗ୍ୟ ନୁହେଁ ।"

ଏ କଥା ଶୁଣି ନାଗରାଜ ଟଙ୍କା ନ ପାଇ ଦୁଃଖିତ ହେଲେ ମଧ୍ୟ ମନେ ମନେ ଖୁସୀ ହେଲା ଯେ ବିଶାଳଗୁପ୍ତ କୃଷ୍ଣଦାସକୁ ଠକାଇଛି ।

ଏଣେ କୃଷ୍ଣଦାସ ପୁଷ୍ପରାଜ ସହ ଦେଖା କରି ବିଶାଳଗୁପ୍ତଙ୍କ କଥା କହିଲା । ତା'ପରେ ପୁଷ୍ପରାଜ କହିଲା, "ଆପଣଙ୍କୁ ବିଶାଳଗୁପ୍ତ ଯେଉଁ ହୀରା ଦେଇଛନ୍ତି, ତାକୁ ମୋତେ ଦେଇ ତା'ର ମୂଲ୍ୟ ନେଇଯାନ୍ତୁ ।"

"ମହାଶୟ, ସେ ହୀରାଟି ବାଟରେ ଚୋରି ହୋଇଗଲା । ସେଥିପାଇଁ ମୁଁ ଆପଣଙ୍କ ପାଖକୁ ଆସିନି, ବିଶାଳଗୁପ୍ତଙ୍କ ମିତ୍ର ଭାବରେ ଦେଖା କରିବାକୁ ଆସିଛି ।" କୃଷ୍ଣଦାସ କହିଲା ।

"ମୁଁ ଶୁଣିଛି କି ଆପଣଙ୍କ ସହିତ ଅନ୍ୟ ଜଣେ ବ୍ୟକ୍ତି ଅଛି । ସେ କାହିଁ ?" ହଠାତ୍ ପୁଷ୍ପରାଜ ପଚାରିଲା ।

"ସେ ତ ସହର ଦେଖିବାକୁ ଯାଇଛି ।" କୃଷ୍ଣଦାସ କହିଲା ।

ତା'ପରେ ପୁଖରାଜ ନିଜର ଦୁଇଜଣ କର୍ମଚାରୀଙ୍କୁ ଡାକି ନିଜ ଭାଷାରେ ଆଦେଶ ଦେଇ କିଛି କହିଲା । ସେମାନେ ସେଠାରୁ କୁଆଡ଼େ ଚାଲିଗଲେ ଓ କିଛି ସମୟ ପରେ ନାଗରାଜକୁ ଧରି ଆସି ସେଠାରେ ପହଞ୍ଚିଲେ । ପୁଖରାଜ ନିଜର କର୍ମଚାରୀମାନଙ୍କ ଦ୍ୱାରା ଖୋଜାଖୋଜି କରି ନାଗରାଜ ପାଖରୁ ହୀରାଟି ବାହାର କଲା ।

"ଆପଣଙ୍କର ଯେଉଁ ହୀରାଟି ହଜିଛି ଇଏ ସେଇ ହୀରା ତ ? ଆପଣ ଚିନ୍ତା କରନ୍ତୁ ନାହିଁ । କାରଣ ଏହା ଏକ କାଚଖଣ୍ଡ ମାତ୍ର । ଆଉ ଆପଣଙ୍କର ବନ୍ଧୁଙ୍କୁ ଚିହ୍ନିରଖନ୍ତୁ । ସତ ହୀରା ଭାବି ଏହାକୁ ଚୋରି କରି ସହରର ଜଣେ ରତ୍ନବ୍ୟବସାୟୀ ନିକଟରେ ଏହାକୁ ବିକିବାକୁ ଚାହିଁଥିଲା । ଆପଣଙ୍କୁ ଯେଉଁ ହୀରା ବିଶାଳଗୁପ୍ତ ଦେବାକୁ ଚାହୁଁଥିଲେ ତାହା ପ୍ରକୃତ ହୀରା । ତାକୁ ସେ ମୋ ପାଖକୁ ପଠାଇଦେଇଛନ୍ତି । ତା'ର ମୂଲ୍ୟ ମୁଁ ଆପଣଙ୍କୁ ନ ଦେଇ ଆପଣଙ୍କ ଗାଁକୁ ଲୋକ ଦେଇ ପଠାଇଦେବି । କିନ୍ତୁ ଆପଣଙ୍କ ବନ୍ଧୁଙ୍କୁ ନ୍ୟାୟ ପାଇଁ ମୁଁ ରାଜାଙ୍କ ଲୋକଙ୍କ ହାତରେ ଦେବି । ତାହା ମୋର ବର୍ତ୍ତମାନର କର୍ତ୍ତବ୍ୟ ।" ପୁଖରାଜ କହିଲା ।

"ମହାଶୟ, ମୁଁ ଏ କଥାରେ ସ୍ୱୀକୃତ ହେବି ନାହିଁ । କାରଣ ସାରା ତୀର୍ଥଯାତ୍ରାରେ ସେ ମୋ ସହିତ ସୁଖଦୁଃଖ ଭିତରେହିଁ ରହିଛନ୍ତି । ତା' ପରେ ସେ ଯାହା ଚୋରି କରିଛନ୍ତି ସେଇଟି କାଚ ମାତ୍ର । ତା'ଛଡ଼ା ମୁଁ ତାଙ୍କୁ ମୋ ହୀରାର ମୂଲ୍ୟରୁ ଅଧେ ଦେବି । ତେଣୁ ଆପଣ ଦୟା କରି ମୋ ବନ୍ଧୁଙ୍କ ନାମରେ କଳଙ୍କ ଲଗାନ୍ତୁ ନାହିଁ ।" କୃଷ୍ଣଦାସ ପୁଖରାଜକୁ ଅନୁରୋଧ କଲା ।

ତା'ପରେ ସିଦ୍ଧିପୁର ପହଞ୍ଚିବା ସଙ୍ଗେ ସଙ୍ଗେ କୃଷ୍ଣଦାସ ହୀରାର ମୂଲ୍ୟ ପାଇଗଲା । ସେ ଯେତେବେଳେ ସେଥିରୁ ଅଧେ ନାଗରାଜକୁ ଦେବାକୁ ଚାହିଁଲା, ନାଗରାଜ ବଡ଼ କୃତଜ୍ଞତା ସହିତ କହିଲା, "ବନ୍ଧୁ ତୁମେ ମୋତେ କାରାଗାର ଦଣ୍ଡରୁ ମୁକ୍ତ କରିଛ । ସେତିକି ମୋ ପାଇଁ ଯଥେଷ୍ଟ ବଡ଼ ଉପକାର ।"





# ପୋତାଧନର ମାୟା

ଦୀନୁର ଦୈନିକ ପେଶା ହେଲା ଘୋଡ଼ାଗାଡ଼ି ଚଳାଇବା । ଦିନେ ସଞ୍ଜବେଳେ ସେ ଘରକୁ ଫେରୁଛି । ରାସ୍ତାକଡ଼ରେ ଠିଆ ହୋଇଥିବା ଜଣେ ଲୋକ ତାକୁ କହିଲା, "ଛଅମାଇଲ ଦୂରରେ ଯେଉଁ ଭଙ୍ଗା ଚଟିଘର ଅଛି, ମୁଁ ସେଇଠାକୁ ଯିବି । ଭୋରକୁ ଫେରିବି । ଯିବ ?"

ଦୀନୁ ରାଜି ହେଲା । ଭଦ୍ରଲୋକ କିଛି ଦିନ ହେଲା ତା' ସହରରେ ବସା ନେଇ ରହିଥିଲେ ବୋଲି ସେ ଜାଣିଥିଲା ।

ଭଦ୍ରଲୋକ ଗାଡ଼ିରେ ଉଠିବା ବେଳକୁ ସେ ଦେଖିଲା ସାଥିରେ ସେ ଗୋଟିଏ କଳସୀ ଏବଂ ଦୁଇଟି କୋଦାଳ ନେଉଛନ୍ତି ।

"ସେ ଭଙ୍ଗା ଚଟିଘରେ କ'ଣ ଧନସମ୍ପଦ ପୋତା ହୋଇଛି—ଇଏ ଭଦ୍ରଲୋକ ଖୋଳିବାକୁ ଯାଉଛନ୍ତି ?" ଦୀନୁ ମନେ ମନେ ଭାବୁଥାଏ ।

ସେମାନେ ଚଟିଘର ପାଖରେ ପହଞ୍ଚିବା ବେଳକୁ ବେଶୀ ରାତି ହୋଇଗଲାଣି । ଭଦ୍ରଲୋକ କଳସୀ ତଳକୁ ଓହ୍ଲାଇବା ବେଳକୁ ତାହା ତାଙ୍କ ହାତରୁ ଖସିଯିବାରୁ ସେଥିରୁ କିଛି ମାଟିଗୋଡ଼ି ବାହାରି ତଳେ ପଡ଼ିବାର ଦୀନୁ ଦେଖିଲା ।

"ବାବୁ, ଏ ଗୋଡ଼ିଭର୍ତ୍ତି କଳସୀ ଏତେ ରାତିରେ କି କାମରେ ଲାଗିବ ?" ଦୀନୁ ପଚାରିଲା ।

ଭଦ୍ରଲୋକ କହିଲେ, "ମୁଁ ତୁମକୁ ସବୁ କଥା ଖୋଲି କହିଦେଉଛି । ତୁମେ କାହାକୁ କହିବ ନାହିଁ । ତୁମର ସାହାଯ୍ୟ ବି ମୋର ଦରକାର । ମୋ ଜେଜେବାପା ସମୁଦ୍ରରେ ବାଣିଜ୍ୟ କରି ବେଶ୍ ଟଙ୍କା ଉପାର୍ଜନ କରିଥିଲେ । ଥରେ ସେ ଏହି ରାସ୍ତାରେ ଆମ

ସୁରେଶ



ଗାଁକୁ ଫେରୁଥିଲେ । ଏହି ଚଟିଘର ପାଖରେ ପହଞ୍ଚିବା ବେଳକୁ ଅଧରାତି ହୋଇଗଲା । ସେ ଓ ତାଙ୍କ ଲୋକେ ବିଶ୍ରାମ କରୁଥା'ନ୍ତି, ଗୋଟାଏ ଡାକୁଦଳ ଆସି ଚଟିଘର ଘେରାଉ କଲେ । ଜେଜେଙ୍କ ସହ ବାପା ବି ଥା'ନ୍ତି । ସେ ଖସିଗଲେ । କିନ୍ତୁ ଜେଜେ ଓ ଅନ୍ୟମାନେ ଡାକୁଦଳ ହାତରେ ମଲେ ।

"ବାପା ଅନ୍ୟ ବେପାର କରି କୌଣସି ପ୍ରକାରେ ସଂସାର ଚଳାଇ ମୋତେ ମଣିଷ କଲେ । କିନ୍ତୁ ସେ ହଠାତ୍ ବେମାର ପଡ଼ି ମରିବା ବେଳକୁ ମୋତେ କହିଗଲେ କି ଡାକୁମାନେ ଚଟିଘର ଘେରାଉ କରିବା ମାତ୍ରେ ଜେଜେବାପା ଗୋଟାଏ ଗଛମୂଳରେ ଗର୍ତ୍ତଏ ସୁନା ପୋତିପକାଇଥିଲେ । ସେ ଠିକ୍ ଭାବରେ ସବୁ କହିପାରିବା ପୂର୍ବରୁ ମରିଗଲେ । ମୁଁ ସେହି ପୋତାଧନ ସନ୍ଧାନରେ ଆସିଛି । ତୁମେ ବି ମୋ ସହ ଖୋଳାଖୋଳି କର । ଯାହା ମିଳିବ, ତୁମକୁ ତା'ର ବୃହଦଂଶରୁ ଭାଗେ ଦେବି ।"

ଧିନୁ ଏ କାହାଣୀ ଶୁଣି କାବା ହୋଇଗଲା । ଚଟିଘର ଏବଂ ଆଖପାଖ ଅଞ୍ଚଳ ଶୂନଶାନ୍ । ସେହି ଡକାଏତି ଓ ହତ୍ୟାକାଣ୍ଡ ପରଠାରୁ କେହି ଆଉ ସେ ଚଟିଘରେ ରହୁ ନ ଥିଲେ । ରାସ୍ତା ମଧ୍ୟ ଟିକିଏ ଦୂରେଇ କରି ଯାଇଥିଲା । ଚଟିଘରର ପରିବେଶ ଖୁବ୍ ନଛୁଟିଆ ହୋଇଥିବାରୁ ତାହା ଭୟର ଉଦ୍ରେକ କରୁଥିଲା । କିନ୍ତୁ ପୋତାଧନର ପ୍ରତିଶ୍ରୁତି ଧିନୁକୁ ଲୋଭାତୁର କଲା ।

ଧିନୁ ତାଙ୍କୁ ସାହାଯ୍ୟ କରିବାକୁ ସାନନ୍ଦ ସମ୍ମତି ଦେଲା । ତେବେ ସେ ପଚାରିଲା, "ଆପଣ ଏ କଳସୀରେ ଗୋଡ଼ି ପୁରାଇ ଆଣିଛନ୍ତି କାହିଁକି ?"

"ପୋତାଧନ ପାଇବା ପାଇଁ କେତେଥର ଆସିବାକୁ ପଡ଼ିବ କିଏ ଜାଣେ ? ଲୋକେ କୌତୂହଳୀ ହୋଇ ହଠାତ୍ ଆମ କଳସୀ ଖୋଲିଲେ ଗୋଡ଼ିମାଟି ଦେଖିବେ । ତେଣିକି

ଅସଲ ସୁନା ନେଇଗଲା ବେଳେ କେହି ଆଉ କୌତୂହଳୀ ହେବେ ନାହିଁ ।” ଭଦ୍ରଲୋକ ଉତ୍ତର ଦେଲେ ।

ଧନୁକୁ ଏ ଉତ୍ତର ଟିକିଏ ଅସ୍ୱାଭାବିକ ଲାଗିଲା ସତ, କିନ୍ତୁ ପୋତାଧନ ଉପରେ ତା' ମନ ଥାଏ । ସେ ଅନ୍ୟ ସବୁ ଭୁଲିଯାଇ ଗୋଟାଏ କୋଦାଳ ଧରି ଭଦ୍ରଲୋକ ନିର୍ଦ୍ଦେଶ କରିବା ସ୍ଥାନରେ ମାଟି ଖୋଳିବାକୁ ଲାଗିଲା । ଭଦ୍ରଲୋକ ନିଜେ ଅନ୍ୟ କୋଦାଳ ଧରି ଅନ୍ୟତ୍ର ଖୋଳିଲେ । ଭୋର ପର୍ଯ୍ୟନ୍ତ ଖୋଳି ବି ସେମାନେ କିଛି ପାଇଲେ ନାହିଁ । ଗୋଡ଼ିଭରା କଳସୀ ଧରି ଫେରିଲେ । ଭଦ୍ରଲୋକଙ୍କୁ ତାଙ୍କ ବସାଘରେ ଛାଡ଼ି ଦେଇ ଧନୁ ନିଜ ଘରକୁ ଫେରିଲା ।

“ସାରାରାତି କେଉଁଠାରେ ଥିଲ ?” ତା' ସ୍ତ୍ରୀ ପଚାରିଲା । ଧନୁ ପୋତାଧନ କଥା ଗପିଲା । “ଜାଣିଁକି ବାଇଆଙ୍କ ଭଳି ସେ ମାୟା ମରୀଚିକା ପଛରେ ଧାଉଁଛ ?” ସ୍ତ୍ରୀ କହିଲା ।

କିନ୍ତୁ ଧନୁ ହତୋତ୍ସାହ ନ ହୋଇ ସେଦିନ ସନ୍ଧ୍ୟାବେଳକୁ ପୁଣି ଭଦ୍ରଲୋକଙ୍କୁ ଧରି ଚଟିଘର ଅଭିମୁଖେ ଚାଲିଲା । ଏହିପରି ପ୍ରାୟ ପନ୍ଦରଦିନ କାଳ ଦୁହେଁ ରାତିଯାକ ସେଠାରେ ଖୋଳାଖୋଳି କରି ସକାଳେ ଘରକୁ ଫେରୁଥା'ନ୍ତି । ଦିନବେଳେ ଧନୁ ଆଉ ଗାଡ଼ି ଚଳାଇ



ପାରୁ ନ ଥାଏ । ରୋଜଗାର ବନ୍ଦ, ଦେହ ବି କ୍ଳାନ୍ତ । ଦିନେ ତାକୁ ଜ୍ୱର ହୋଇଗଲା । ସେ ଭଦ୍ରଲୋକଙ୍କ ପାଖକୁ ସ୍ତ୍ରୀ ହାତରେ ଖବର ପଠାଇଲା ଯେ ସେଦିନ ସେ ଚଟିଘରକୁ ଯାଇ ପାରିବ ନାହିଁ । ସ୍ତ୍ରୀ ଫେରିଆସି ତାକୁ କହିଲା, ଭଦ୍ରଲୋକ ସକାଳେ ସେ ସହର ଛାଡ଼ି ଚାଲିଗଲେଣି ।

ଧନୁ ଅନ୍ଧାର ଦେଖିଲା । ଭଦ୍ରଲୋକ ତେବେ ନିଶ୍ଚେ ପୋତାଧନ ପାଇଛନ୍ତି ଓ କଳସୀରୁ ଗୋଡ଼ିତକ ବାହାର କରିଦେଇ ତାହା ଭର୍ତ୍ତି କରି ଫେରିଛନ୍ତି । ଧନୁ କିନ୍ତୁ ସବୁଦିନ ଭଳି କଳସୀରେ ଗୋଡ଼ି ଥିବ ବୋଲି ଭାବୁଛି !

ଦୂର ସତ୍ତ୍ୱେ ଧାନୁ ସେ ବସାଘର ଆଡ଼େ ଦୌଡ଼ିଲା । ପଛେ ପଛେ ଗଲା ସ୍ତ୍ରୀ ।

ବସାଘର ପିଣ୍ଡାରେ ଜଣେ ବୁଢ଼ା ବସିଥାଏ । ଧାନୁ ତାକୁ ଭଦ୍ରଲୋକ କଥା ପଚାରିଲା । ସେ କହିଲା, "ଭଦ୍ରଲୋକଙ୍କ ପାଗଳାମି ବଢ଼ିଯିବାରୁ ଚିକିତ୍ସାପାଇଁ ସେ ଦୂର ସ୍ଥାନକୁ ନିଆ-ହେଲେ ।

"ଭଦ୍ରଲୋକ କ'ଣ ପାଗଳ ଥିଲେ ?" ଧାନୁ ଅବାକ୍ ହୋଇ ପଚାରିଲା ।

"ପାଗଳ ନୁହେଁ ତ କ'ଣ ? ତା' ଜେଜେ-ବାପା ପୋତାଧନ ରଖିଯାଇଛନ୍ତି କହି ଯୁଆଡ଼େ ଯାଏ, ସେଆଡ଼େ ଖୋଳାଖୋଳି ଆରମ୍ଭ କରେ । ଆଜି ସକାଳେ ଶୋଇବାଘର, ରୋଷେଇଘର ବି ଖୋଳିବାକୁ ଆରମ୍ଭ କରିଥିଲା ।" ବୁଢ଼ା ଜଣାଇଲା ।

ଧାନୁ ଦୀର୍ଘଶ୍ୱାସ ଛାଡ଼ି ଘରକୁ ଫେରିଗଲା । ତା'ର ପନ୍ଦର ବର୍ଷର ପରିଶ୍ରମ ବ୍ୟର୍ଥ ହେଲା !

ଧାନୁ ଚାଲିଯିବା ମାତ୍ରେ ତା' ସ୍ତ୍ରୀ ବୁଢ଼ାକୁ କହିଲା, "ମୋ କଥା ମାନି ଆପଣ ତାକୁ ଯାହା କହିଲେ, ସେଥିପାଇଁ ମୁଁ କୃତଜ୍ଞ ।"

"ଆଚ୍ଛା, ମା, ସେ ଭଦ୍ରଲୋକ ତ ସତରେ ପୋତାଧନ ପାଇ ଧାନକୁ ଠକିଦେଇ ପଳାଇଛନ୍ତି । ତୁ ମୋତେ ସେ ପାଗଳ ବୋଲି କହିବାକୁ କାହିଁକି ଅନୁରୋଧ କଲୁ ?" ବୁଢ଼ା ମୃଦୁ କଣ୍ଠରେ ପଚାରିଲା ।

ଭଦ୍ରଲୋକ ମୋ ସ୍ୱାମୀକୁ ଠକି ଦେଲେ—ଏକଥା ଜାଣିଲେ ମୋ ସ୍ୱାମୀ ଦୁଃଖରେ ଓ କ୍ରୋଧରେ ପାଗଳ ହୋଇଯିବେ । ପୂର୍ବରୁ ଆମ ସଂସାର ବେଶ୍ ଭଲ ଚାଲୁଥିଲା । ପୋତାଧନ ସବୁ ବିଭ୍ରାଟ କଲା । ସେ ଭଦ୍ରଲୋକ ଯେଉଁ ଅନ୍ୟାୟ କଲେ, ତା' ଫଳ ସେ ପାଇବେ । କିନ୍ତୁ ଆମର ଜୀବନ ସ୍ୱାଭାବିକ ଅବସ୍ଥାକୁ ଫେରିଆସୁ, ମୋର ଏତିକି ଇଚ୍ଛା ।" ଧାନୁର ସ୍ତ୍ରୀ ବୁଝାଇଦେଲା ।



# ଅଧା-ଧାର୍ମିକ !

ରାଜା ଜୟସିଂହଙ୍କ ଦରବାରରେ ଆସି ଗରିବ ଲୋକଟିଏ ପହଞ୍ଚିଲା । ସେ ନିଜ ଦୁଃଖ କହି ରାଜାଙ୍କୁ ସାହାଯ୍ୟ ପ୍ରାର୍ଥନା କରନ୍ତେ ରାଜା ତାଙ୍କୁ କିଛି ପଡ଼ିଆଜମି ଦେଲେ ।

ବର୍ଷକ ପରେ ରାଜା ଓ ମନ୍ତ୍ରୀ ଛଦ୍ମବେଶରେ ଯାଇ ସେ ଗରିବର କୁଡ଼ିଆରେ ପହଞ୍ଚିଲେ । ଗରିବ ଦୁଇଜଣଙ୍କୁ ଆଦର ଦେଖାଇ ବସାଇଲା ।

କିଛି ସାଧାରଣ କଥାବାର୍ତ୍ତା ପରେ ଛଦ୍ମବେଶୀ ମନ୍ତ୍ରୀ ଗରିବକୁ ପଚାରିଲେ, "ଆମେ ରାଜାଙ୍କୁ ଭେଟିବାକୁ ଚାହୁଁଛୁ । ସେ କିପରି ଲୋକ ?"

"ସେ ଅଧା-ଧାର୍ମିକ ।" ଗରିବ ଉତ୍ତର ଦେଲା ।

"ତୁମେ ବର୍ତ୍ତମାନ କହିଲ ଯେ ରାଜାଙ୍କ ଦୟାରୁ ତୁମେ ଜମି ପାଇଛ । ତୁମେ ପୁଣି ତାଙ୍କୁ ଅଧା-ଧାର୍ମିକ କହୁଛ କିପରି ?" ମନ୍ତ୍ରୀ ପଚାରିଲେ ।

"ବାବୁ, ମୁଁ ହିମ୍ମତ ବାନ୍ଧି ରାଜାଙ୍କୁ ଦେଖା କଲି । ଦୁଇପଦ କହି ଜାଣିଥିଲି ବୋଲି ମୋ ଦୁଃଖ ଶୁଣାଇଲି । ତେବେ ଯାଇ ରାଜା ମୋତେ ସାହାଯ୍ୟ ଦେଲେ । କିନ୍ତୁ ଏ ରାଜ୍ୟରେ କେତେ ଗରିବ ଲୋକ ଅଛନ୍ତି; ଯେଉଁମାନେ କି ଦରବାରକୁ ଯିବାକୁ ସାହସ କରିବେ ନାହିଁ । କଥା ପଚାରିଲେ ସେମାନଙ୍କ ପାଟି ଫିଟିବ ନାହିଁ । ରାଜା ଯଦି ନିଜ ତରଫରୁ ସେମାନଙ୍କ ଦୁଃଖ ଦୂର କରିବାର ବ୍ୟବସ୍ଥା କରନ୍ତେ, ତେବେ ସିନା ତାଙ୍କୁ ପୂରା-ଧାର୍ମିକ କହନ୍ତ !" ଗରିବ ଉତ୍ତର ଦେଲା ।

ରାଜାଙ୍କ ଆଖି ଖୋଲିଗଲା । ସେ ରାଜ୍ୟର ସବୁ ପଡ଼ିଆ ଜମି ଜମିହୀନମାନଙ୍କ ମଧ୍ୟରେ ବାଣ୍ଟି ଦେଲେ ।





# ଚୋରଘରୁ ଚୋରି

ମହେନ୍ଦ୍ରପୁରରେ ବଡ଼ ଦୋକାନ ବସାଇଥାଏ ଜୀବନ ଗୁପ୍ତ । ସେ ଏପରି ମିଠା କଥା ଅନର୍ଗଳ କହିଯାଉଥାଏ ଯେ ସମସ୍ତଙ୍କର ଧାରଣା ହୋଇଥାଏ ସେ ଜଣେ ସାଧୁ ବେପାରୀ । ଯଦି କେହି କେବେ ଦେଖୁଥାଏ ଯେ ତା' ଦୋକାନରୁ କିଣା ଜିନିଷ ଓଜନରେ କମ୍ ହେଉଛି କିମ୍ବା ଭେଜାଲ ଭଳି ମନେ ହେଉଛି, ତେବେ ଜୀବନ ଗୁପ୍ତ ତାକୁ ଏମିତି ଲମ୍ବାଚଉଡ଼ା ବକ୍ତୃତା ଶୁଣାଇବ ଯେ ସେ ବିଚାରି ଭାବିବ ଭୁଲ ତା' ନିଜର, ଜୀବନ ଗୁପ୍ତର ନୁହେଁ ।

କିନ୍ତୁ ଗ୍ରାମସଭାର ସଭାପତିଙ୍କର ତା' ଉପରେ ସନ୍ଦେହ ଥାଏ । "ଜୀବନ ଗୁପ୍ତ ସାଧୁ ହୋଇ-ଥିଲେ ରକ୍ଷା, କିନ୍ତୁ ତା'ଭଳି ଲୋକ ଯଦି ଠକ ହୋଇଥିବ, ତେବେ ସେ ମୋ ଗାଁ-ଲୋକଙ୍କର ଅଶେଷ ଅନିଷ୍ଟ କରିବ ।" ସେ ମନେ ମନେ ଭାବିଲେ । ଦୁଇ ଚରଜଣଙ୍କ ଜରିଆରେ ସେ ସଉଦା କରି ଦେଖିଲେ, ଜୀବନ ଗୁପ୍ତ ବାସ୍ତବିକ ଓଜନରେ କମ୍ ଦେବା ସଙ୍ଗେ ସଙ୍ଗେ ଭେଜାଲ ଦେଉଛି ।

ଦିନେ ସେ ନିଜେ ଯାଇ ଦୋକାନରେ ପହଞ୍ଚିଲେ ଓ କହିଲେ, "ମୋର କିଛି ଘିଅ ଦରକାର । କିପରି ଘିଅ ରଖିଛ ?"

ଜୀବନ ଗୁପ୍ତ ସଙ୍ଗେ ସଙ୍ଗେ ଗୋଦାମ ଘରେ ଥରେ ପଶି ବାହାରିଆସିଲା । ତିନି ଅଙ୍ଗୁଳିରେ ଘିଅ ଲାଗିଥାଏ । ସେ ସଭାପତିଙ୍କୁ କହିଲା, "ଆପଣ ଏ ତିନି ଘିଅ ଦେଖନ୍ତୁ । କେଉଁଟି ଲୋଡ଼ା ?"

"ପ୍ରଭେଦ କ'ଣ ?" ସଭାପତି ପଚାରିଲେ ।

"ପ୍ରଥମ ଘିଅ ବିଶୁଦ୍ଧ । ଏ ଅଞ୍ଚଳରେ ବାବୁ ଏ ଜିନିଷ ଆପଣ ପାଇବେ ନାହିଁ । ଇଏ ଖାଲି

ଆପଣମାନଙ୍କ ଭଳି ଚିହ୍ନାଗ୍ରାହକଙ୍କ ସକାଶେ ମୁଁ ରଖିଥାଏ । ଦୁଇ ନମ୍ବର ଘିଅ ଭଲ ଘିଅ । ସତ କଥା କହିଲେ ଆଖପାଖର ଅନ୍ୟ ଦୋକାନୀମାନେ ସର୍ବୋତ୍କୃଷ୍ଟ ଘିଅ ନାମରେ ଯାହା ବିକନ୍ତି, ଇଏ ତାହାଠୁ ଭଲ । ତିନି ନମ୍ବର ଘିଅ ଖରାପ ନୁହେଁ, ତେବେ ଆପଣଙ୍କୁ ତ ମିଛ କହିବି ନାହିଁ, ଏହା ସେତେଦୂର ଭଲ ବି ନୁହେଁ । ସାଧାରଣ ଗରାଖଙ୍କ କଥା ତ ଜାଣିଛନ୍ତି । ସେମାନେ ସବୁବେଳେ ଶସ୍ତାରେ ଭଲ ଜିନିଷ ଆଶା କରନ୍ତି ।"

ଜୀବନ ଗୁପ୍ତ ଏପରି କଣ୍ଠରେ ଏସବୁ କହିଲା, ସଭାପତି ଭାବିଲେ ଏଡ଼େ ସ୍ପଷ୍ଟବାଦୀ ଲୋକକୁ ସନ୍ଦେହ କରିବା ତାଙ୍କର ଅନ୍ୟାୟ ହୋଇଛି ।

"ବାବୁ, ଜୀବନରେ ମୁଁ ଭେଜାଲ କରିନାହିଁ, କାହାକୁ ଠକିନାହିଁ !" ଜୀବନ ଗୁପ୍ତ ତା' ବକ୍ତବ୍ୟ ସମାପ୍ତ କଲା ।

ସେ ପହିଲି ନମ୍ବର ଘିଅ କିଣି ବିଦାୟ ହେଲେ ।

ପରଦିନ ସକାଳେ ଜୀବନ ଗୁପ୍ତ ଆସି ତାଙ୍କ ଘରେ ହାଜର । ତା' ମୁହଁ ବିକଳ ଦିଶୁଥାଏ । ସେ କହିଲା "ଆଜ୍ଞା ! ରାତିରେ ମୋ ଦୋକାନରୁ ଚୋରି ହୋଇଯାଇଛି । ଆପଣ ଚୋର ଧରିବା ବ୍ୟବସ୍ଥା କରନ୍ତୁ ।"

"ସତେ ? ନିଶ୍ଚୟ ଚୋର ଧରିବାର ବ୍ୟବସ୍ଥା କରିବା । କିନ୍ତୁ କ'ଣ କ'ଣ ଯାଇଛି ?" ସଭାପତି ପଚାରିଲେ ।



"ଟିଣେ ଘିଅ, ବସ୍ତାଏ ଚାଉଳ, ବସ୍ତାଏ ଡାଲି ଆଉ ମୋ ଓଜନପଥରସବୁ ଚୋରି ହୋଇଛି ।" ଜୀବନ ଗୁପ୍ତ କହିଲା ।

"ଗାଁଲୋକେ ରାତିରେ କେତେଜଣ ଚୋରଙ୍କୁ ଧରିଛନ୍ତି ଓ କିଛି ଜିନିଷ ବି ଜବଦ ହୋଇଛି । ଦେଖିବା ଚାଲ ସେସବୁ ତୁମର କି ନୁହେଁ ।" ସଭାପତି କହିଲେ ।

ଗ୍ରାମ-ସଭାଗୃହରେ ଜିନିଷ ଗଚ୍ଛିତ ଥାଏ । ଗ୍ରାମର ବିଶିଷ୍ଟ ଲୋକମାନେ ଆସିଗଲେ । ଜୀବନ ଗୁପ୍ତ ମାଲ୍‌ତକ ଦେଖି କହିଲା, "ଆଜ୍ଞା ! ଏଇସବୁ ମୋର ।"

ପରୀକ୍ଷା କରି ଦେଖାଗଲା, ସେ ଚାଉଳରେ ଏକପଞ୍ଚମାଂଶ ଗୋଡ଼ି ।

"ଜୀବନ ଗୁପ୍ତ ! ଇଏ ତୁମର ହୋଇପାରେନା । ତୁମେ ଜୀବନରେ ଭେଜାଲ୍ କରିନାହଁ, ଠକିନାହଁ । ଏସବୁ ତ କୌଣସି ଠକ ଦୋକାନୀର !" ସଭାପତି କହିଲେ ।

ଜୀବନ ଗୁପ୍ତ ଚୁପ୍ ରହିଲା ।

"ବାକି ରହିଲା ଘିଅଟିଣ କଥା । ତୁମେ କହୁଥିଲ ତୁମର ତିନିପ୍ରକାର ଘିଅ ଅଛି । ବାକି ଦୁଇଟିଣ ତୁମ ଗୋଦାମରେ ଥିବ । ଚାଲ ଦେଖିବା ।" ସଭାପତି କହିଲେ ।

ଗୋଦାମକୁ ଯାଇ ଦେଖାଗଲା, ଅନ୍ୟ ଘିଅଟିଣ ନାହିଁ ।

"ଜୀବନ ଗୁପ୍ତ ! ଅର୍ଥାତ୍ ତୁମେ ଗୋଟାଏ ଟିଣରେହିଁ ତିନିପ୍ରକାର ଘିଅ ରଖିଥିଲ । ଏଡ଼େ ବଡ଼ କୃତିତ୍ୱ ତୁମ ଭଳି ବିଚକ୍ଷଣ ବ୍ୟବସାୟୀ ପକ୍ଷରେହିଁ ସମ୍ଭବ ।" ସଭାପତି କହିଲେ । ଜୀବନ ଗୁପ୍ତ ନୀରବ ରହିଲା ।

ସଭାପତି ପୁଣି କହିଲେ, "ଜୀବନ ଗୁପ୍ତ, ଚୋରି ଯିଏ କରିଥାଉ ନା କାହିଁକି, ସେ କଥା ଶୁଣି ତୁମର ଲାଭ ନାହିଁ । କିନ୍ତୁ ଆମର ଏ ଗରିବ ଗାଁର ଲୋକେ ତୁମର ଯୋଗ୍ୟ ନୁହନ୍ତି । ତୁମେ ଏ ଗାଁ ଛାଡ଼ି ଚାଲିଯାଅ ।"



# ଦେବୀ ଭାଗବତ

ଯେକୌଣସି ପ୍ରକାରେ ଇନ୍ଦ୍ରଙ୍କୁ ବଧ କରିବା ନିମନ୍ତେ ତ୍ୱଷ୍ଟା ବୃତ୍ରକୁ ଆଦେଶ ଦେଲା । ବୃତ୍ର ରଥାରୋହଣ କରି ବିଶାଳ ସୈନ୍ୟବାହିନୀ ଧରି ଇନ୍ଦ୍ରବଧ ଉଦ୍ଦେଶ୍ୟରେ ଚାଲିଲା । ଇନ୍ଦ୍ର ବି ସେ ସମ୍ବାଦ ପାଇ ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହେଲେ ।

ଇନ୍ଦ୍ର ଏବଂ ବୃତ୍ର ମଧ୍ୟରେ ଯୁଦ୍ଧ ଆସନ୍ନ ଜାଣି ମୁନିଋଷିଗଣ ଶଙ୍କିତ ହେଲେ । ବାରଂବାର ଦେବାସୁରଯୁଦ୍ଧ ଲାଗିବା ହେତୁ ସେମାନଙ୍କ ଶାନ୍ତି ବିପନ୍ନ ହେଉଥିଲା । ଅସୁରମାନଙ୍କର ଲକ୍ଷ୍ୟ ଯେ କେବଳ ଦେବଗଣ ଥିଲେ, ତାହା ନୁହେଁ, ମୁନିଋଷିମାନଙ୍କୁ ହଇରାଣ କରିବାରେ ସେମାନେ ଆନନ୍ଦ ପାଉଥିଲେ ।

ବୃତ୍ରାସୁର ଭଳି ବଳଶାଳୀ ଶତ୍ରୁକୁ ବହୁ କାଳ ଧରି ଇନ୍ଦ୍ରଙ୍କୁ ସାମନା କରିବାକୁ ପଡ଼ି ନ ଥିଲା । ଇନ୍ଦ୍ର ଯଥା ସମ୍ଭବ ସତର୍କତା ସହକାରେ ଦେବବାହିନୀଙ୍କୁ ସଙ୍ଗଠିତ କଲେ । ଯେତେବେଳେ ସେ ସମ୍ବାଦ ପାଇଲେ ଯେ ବୃତ୍ର ଆସି ସ୍ୱର୍ଗଦ୍ୱାରରେ ଉପସ୍ଥିତ ହେଲାଣି, ସେ ସସୈନ୍ୟେ ବାହାରିଆସିଲେ ।

ଘମାଘୋଟ ଯୁଦ୍ଧ ହେଲା । ବୃତ୍ର ଇନ୍ଦ୍ରଙ୍କୁ ପରାଜିତ ଓ ବନ୍ଦୀ କରି ତା'ପରେ ଗିଳିଦେଲା ! ଦେବଗଣ ଦୂରରୁ ସେ ଦୃଶ୍ୟ ଦେଖି ବିଳାପ ଓ କୋଳାହଳ କରିଉଠିଲେ ଏବଂ ବୃହସ୍ପତିଙ୍କ ନିକଟକୁ ଯାଇ ସବୁ ଜଣାଇଲେ ।

ଏତେ ଅଳ୍ପ ସମୟ ଭିତରେ ବୃତ୍ରାସୁର

ଇନ୍ଦ୍ର-ବୃତ୍ର ସଂଘର୍ଷ



ଜୃମ୍ଭିକା ଯାଇ ବୃତ୍ର ମୁହଁରେ ପ୍ରବେଶ କରି ତାକୁ ହାଇ ମରାଇଲା । ସେ ହାଇ ମାରିବା ମାତ୍ରେ ଇନ୍ଦ୍ର ବାହାରି ପଳାଇଆସିଲେ ।

ଇନ୍ଦ୍ର ଅସୁର ମୁହଁରୁ ବର୍ତ୍ତିଆସିବାର ଦେଖି ଦେବଗଣ ଆନନ୍ଦରେ କୋଳାହଳ କଲେ । ତେବେ ଦେବତାଙ୍କର ସେ ଆନନ୍ଦ ଦୀର୍ଘସ୍ଥାୟୀ ହେଲା ନାହିଁ । ଇନ୍ଦ୍ର ମଧ୍ୟ ବର୍ତ୍ତିଆସି ବିଶେଷ ଗର୍ବିତ ଦେଖାଯାଉ ନ ଥିଲେ । ଅସୁରର ପରାକ୍ରମ ତାଙ୍କୁ ଅତୀବ ଶଙ୍କିତ ତଥା ମ୍ରିୟମାଣ କରିଦେଇଥିଲା । ହାଇ ରୂପକ କୌଶଳଟି ଆବିଷ୍କୃତ ହୋଇ ନ ଥିଲେ ସେ କ୍ରମେ ଅସୁର ଗର୍ଭରେ ପଚିତ ହୋଇଥାନ୍ତେ—ଏହି କଥା ଭାବି ସେ ଲଜ୍ଜିତ ହେଉଥିଲେ ।

ପୁଣି ଯୁଦ୍ଧ ହେଲା ଏବଂ ପୁଣି ଇନ୍ଦ୍ର ପରାଜିତ ହେଲେ । ବୃତ୍ର ଇନ୍ଦ୍ରପୁରୀ ଅମରାବତୀରେ ପ୍ରବେଶ କରି ଦେବଗଣଙ୍କର ସବୁ ସମ୍ପଦ ଅପହରଣ କଲା । ନିଜେ ସ୍ୱର୍ଗର ରାଜା ବୋଲାଇଲା । ଦେବଗଣ ଏଣେତେଣେ ପଳାୟନ କଲେ । ଦେବରାଜ୍ୟ ରାକ୍ଷସପୁରୀରେ ପରିଣତ ହେଲା ।

ନିଜ ପୁଅ ସ୍ୱର୍ଗର ରାଜା ହେବାର ଦେଖି ତ୍ୱଷ୍ଟାର ଆନନ୍ଦ କହିଲେ ନ ସରେ ।

ଅସୁରମାନଙ୍କର ବହୁ ଦିନର ଅଭିଳାଷ ପୂର୍ତ୍ତି ହେଲା । ସେମାନେ ଗର୍ବ ଏବଂ ଆନନ୍ଦରେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ବ୍ୟାପି ନାଚିକୁଦି ହେଲେ ।

ଏଭଳି ଅଦ୍ଭୁତ କାମଟାଏ କରିବସିବ, ସେ କଥା ବୃହସ୍ପତି କଳ୍ପନା କରି ନ ଥିଲେ । ରାକ୍ଷସ ଇନ୍ଦ୍ରଙ୍କୁ ପରାଜିତ କଲେ ବିସ୍ମୟର ହେତୁ କିଛି ନ ଥିଲା । କିନ୍ତୁ ସେ ଦେବରାଜଙ୍କୁ ପୂରାପୂରି ଗିଳିଦେଲା, ଏହା ଥିଲା ବଡ଼ ଆକସ୍ମିକ ।

ବୃହସ୍ପତି ଧ୍ୟାନରେ ବସି ତା'ପରେ କହିଲେ, "ଯାହା ହୋଇଛି ତାହା ଦୁର୍ଭାଗ୍ୟଜନକ ନିଶ୍ଚୟ । ତେବେ ଆଶ୍ୱାସନାର କଥା ହେଲା, ଇନ୍ଦ୍ର ମରିନାହାଁନ୍ତି । ସେ ବୃତ୍ର ଭିତରେ ଜୀବିତ ଅଛନ୍ତି ।"

ଦେବତାମାନେ ନିଜ ନିଜ ଭିତରେ ପରାମର୍ଶ କରି ଜୃମ୍ଭିକା ନାମକ ଶକ୍ତିକୁ ସୃଷ୍ଟି କଲେ ।

ସେଥିଯୋଗୁ ସୃଷ୍ଟି ହଲଚଲ ହୋଇଗଲା ।

ଦେବଗଣ ଯାଇ ଶିବଙ୍କ ଦ୍ୱାରସ୍ଥ ହେଲେ ଏବଂ କହିଲେ, "ଆମେ ଆପଣଙ୍କ ଶରଣ ନେଲୁ । ଆପଣ ରକ୍ଷା କରନ୍ତୁ ।"

"ଆଚ୍ଛା, ମୁଁ ବ୍ରହ୍ମାଙ୍କୁ ସାଥିରେ ଧରି ବିଷ୍ଣୁଙ୍କ ସହ ପରାମର୍ଶ କରିବି । ବିଷ୍ଣୁହିଁ ବୃତ୍ରକୁ ବଧ କରିବା ଦିଗରେ ବ୍ୟବସ୍ଥା କରିବେ ।" ଶିବ କହିଲେ ।

ତାହାହିଁ ହେଲା । ଶିବ ଓ ବ୍ରହ୍ମାଙ୍କୁ ଅନୁସରଣ କରି ଦେବଗଣ ବି ଯାଇ ବୈକୁଣ୍ଠରେ ପହଞ୍ଚିଲେ । ବିଷ୍ଣୁ ସ୍ମିତ ହସ ସହକାରେ ସେମାନଙ୍କ ଆଗମନର ହେତୁ ଜିଜ୍ଞାସା କଲେ ।



ଦେବଗଣ ସବିସ୍ତାରେ ବୃତ୍ରର ପ୍ରାଦୁର୍ଭାବ ଏବଂ ସେମାନଙ୍କ ଦୁର୍ଦ୍ଦଶା କଥା ବର୍ଣ୍ଣନା କରନ୍ତେ ବିଷ୍ଣୁ ଚିନ୍ତା କରି କହିଲେ, "ବୃତ୍ର ବ୍ରହ୍ମାଙ୍କଠାରୁ ଅଜେୟ ରହିବାର ବର ପାଇ ଏଭଳି ଉଦ୍ଦଣ୍ଡ ହୋଇଛି । ସେ ନିଜର ଭକ୍ତି ଓ ଆନୁଗତ୍ୟ ଦ୍ୱାରା ଯାହା ପାଇଛି, ତାହା ତା'ର ପ୍ରାପ୍ୟ । ସେଥିରୁ ତାକୁ ବ୍ରହ୍ମା ବଞ୍ଚିତ କରି ପାରି ନ ଥା'ନ୍ତେ । କିନ୍ତୁ ଦୁର୍ଭାଗ୍ୟର କଥା ହେଲା ନିଜ ସୁଯୋଗ ଓ ଶକ୍ତିର ସଦୁପଯୋଗ ନ କରି ସେ ଅଧର୍ମିକା ଚରିତାର୍ଥ କରିବାରେ ତାକୁ ପ୍ରୟୋଗ କରୁଛି । ଏଭଳି ଦୁର୍ଦ୍ଦାନ୍ତ ଓ ଦୁଷ୍ଟ ଶକ୍ତିକୁ ପ୍ରତ୍ୟକ୍ଷ ରଣରେ ଦମନ କରିବା ସମ୍ଭବ ନୁହେଁ । ଅନ୍ୟ କୌଣସି ଉପାୟ ଖୋଜିବାକୁ ହେବ । ମୁଁ ଯେମିତି ବାମନ ରୂପରେ ବଳିକୁ ଶିକ୍ଷା ଦେଇଥିଲି; ମୋହିନୀ ରୂପରେ ରାକ୍ଷସମାନଙ୍କୁ ଅମୃତଠାରୁ ଦୂରରେ ରଖିପାରିଥିଲି । ତୁମେମାନେ ଯାଇ ଇନ୍ଦ୍ରକୁ ବୃତ୍ର ସହ ବନ୍ଧୁତା ସ୍ଥାପନ କରିବାକୁ କୁହ । ସର୍ବୋପରି, ଯୋଗମାୟାଙ୍କୁ ପ୍ରାର୍ଥନା କରି ତାଙ୍କ ସହାୟତା ପ୍ରାର୍ଥନା କର । ତାଙ୍କର ସାହାଯ୍ୟରେହିଁ ଇନ୍ଦ୍ର ବୃତ୍ରସଂହାର କରିପାରିବେ ।"

ଦେବତାମାନେ ବିଷ୍ଣୁଙ୍କ ପରାମର୍ଶ ଅନୁସାରେ ମେରୁ ପର୍ବତକୁ ଯାଇ ଯୋଗମାୟାଙ୍କର ଆରାଧନା କରିବାକୁ ଲାଗିଲେ । ଦେବୀ ରକ୍ତବସନ



ପରିଧାନ କରି, ଦିବ୍ୟ ଆୟୁଧ ଧାରଣ କରି ଚତୁର୍ଭୁଜା ଓ ତ୍ରିନୟନା ରୂପେ ଦେବଗଣଙ୍କ ଆଗରେ ପ୍ରତ୍ୟକ୍ଷ ହେଲେ । ଦେବଗଣ ତାଙ୍କୁ ପ୍ରଣାମ କରି କହିଲେ, "ମାତଃ ! ତୁମର ଏ ହତଶ୍ରୀ ସନ୍ତାନମାନଙ୍କ ପ୍ରତି ଦୃଷ୍ଟିପାତ କର । ବୃତ୍ରାସୁର ଆମକୁ ଅଶେଷ ଯାତନା ଦେଲାଣି । ତୁମ ବିନା ଆମର ଆଉ ଆଶ୍ରା ନାହିଁ ।"

ମହାଦେବୀ ସେମାନଙ୍କ ଦୁଃଖର ପ୍ରତିବିଧାନ କରିବାର ପ୍ରତିଶ୍ରୁତି ଦେଇ ସେଠାରୁ ଅନ୍ତର୍ହିତା ହେଲେ ।

ଦେବତାମାନେ ବିଷ୍ଣୁଙ୍କ ଅନ୍ୟ ପରାମର୍ଶ ଅନୁସାରେ ଇନ୍ଦ୍ରଙ୍କୁ ବୃତ୍ରର ବନ୍ଧୁ କରାଇବା ନିମନ୍ତେ ବୃତ୍ର ନିକଟକୁ କେତେଜଣ ମୁନିଙ୍କୁ ପଠାଇଲେ ।

ସେମାନେ ବୃତ୍ରକୁ ଭେଟି କହିଲେ, "ହେ ରାକ୍ଷସରାଜ ! ତୁମେ ଯେପରି ମହାନ୍, ଇନ୍ଦ୍ର ବି ସେହିପରି ମହାନ୍ । ତୁମ ଦୁହିଁଙ୍କ ଭିତରେ ସର୍ବଦା ବୈରିଭାବ ରହିବା କ'ଣ ଅନିବାର୍ଯ୍ୟ ? ମିତ୍ର ଭାବରେ ଦୁହେଁ ଶାନ୍ତିରେ ନ ରହିବ କାହିଁକି ? ଇନ୍ଦ୍ର ତୁମ ସହ ସଖ୍ୟ ସ୍ଥାପନ ପାଇଁ ପ୍ରସ୍ତୁତ ।"

"ଦେଖନ୍ତୁ, ଆପଣମାନଙ୍କ ପ୍ରତି ମୋର ବିଶ୍ୱାସ ରହିଛି । ଆପଣମାନଙ୍କ ଅନୁରୋଧ ମୁଁ ପ୍ରତ୍ୟାଖ୍ୟାନ କରିଦେବାକୁ ଚାହେଁନା । କିନ୍ତୁ ଇନ୍ଦ୍ର ପାପୀ । ସେ ବ୍ରହ୍ମହତ୍ୟା ପାଇଁ ମଧ୍ୟ ପଶ୍ଚାଦ୍-ପଦ ହୁଏନାହିଁ । ତାକୁ ବିଶ୍ୱାସ କ'ଣ ?" ବୃତ୍ର କହିଲା ।

ମୁନିମାନେ ଉତ୍ତର ଦେଲେ, "ଯିଏ ପାପ କରିବ, ତା'ର ଫଳ ତାକୁ ଭୋଗିବାକୁ ପଡ଼ିବହିଁ ପଡ଼ିବ । ସେ ପାଇଁ ତୁମର ଚିନ୍ତା କରିବାର ଦରକାର ନାହିଁ । ତୁମେ ତା' ସହ ବନ୍ଧୁଭାବ ପୋଷଣ କର ।"

ବୃତ୍ର ସହ ଆହୁରି କିଛି ସମୟ କଥାବାର୍ତ୍ତା କଲେ ଦୂତମାନେ । ବୃତ୍ରର ଧାରଣା ହେଲା ଯେ ଇନ୍ଦ୍ର ବାସ୍ତବିକ ତା'ର କୌଣସି ଅନିଷ୍ଟ କରିବେ ନାହିଁ । ସେ ଇନ୍ଦ୍ରଙ୍କ ସହ ବନ୍ଧୁତା କରିବାର



ପ୍ରସ୍ତାବ ଗ୍ରହଣ କଲା । ଦୂତମାନେ ଫେରିଗଲେ ।

ଦୁହିଙ୍କର ସାକ୍ଷାତ ହେଲା । ପରେ ଦୁହେଁ ଏକତ୍ର ବାରଂବାର ସମୁଦ୍ରତଟରେ ଅଥବା ନନ୍ଦନକାନନରେ ସାନନ୍ଦେ ବିଚରଣ କରିବାର ଦେଖାଗଲା । କିନ୍ତୁ ଇନ୍ଦ୍ର କିପରି ବୃତ୍ରକୁ ବଧ କରିବେ, ସେହି ସୁଯୋଗ ଅପେକ୍ଷାରେ ଥାନ୍ତି ।

ବୃତ୍ର ଇନ୍ଦ୍ର ସହ ବନ୍ଧୁତା ପାଶରେ ଆବଦ୍ଧ ହେବାର ଶୁଣି ତ୍ୱଷ୍ଟା ବହୁତ ଆଶ୍ଚର୍ଯ୍ୟ ହେଲା । ସେ ପୁଅ ପାଖକୁ ଯାଇ କହିଲା, "ତୁମେ ଇନ୍ଦ୍ର କଥାରେ ପରତେ ଗଲ କିପରି ? ଇନ୍ଦ୍ର-ମାୟା ସମ୍ପର୍କରେ ତୁମର କୌଣସି ଧାରଣା ନାହିଁ ଦେଖୁଛି । ନିହାତି ପାଗଳ ନ ହେଲେ କେହି ତା'ଭଳି ଶତ୍ରୁ ସହ ବନ୍ଧୁତା କରେ ? ଜାଣିରଖ, ସେ କେବଳ ସୁଯୋଗ ଅପେକ୍ଷାରେ ରହିଛି ।"

ବୃତ୍ର ଅବଶ୍ୟ ତ୍ୱଷ୍ଟାକୁ କିଛି ଜବାବ ଦେଲା ନାହିଁ । କିନ୍ତୁ ତ୍ୱଷ୍ଟାର ସତର୍କବାଣୀ ତା' ମନରେ ବିଶେଷ ରେଖାପାତ କଲା ନାହିଁ ।

ଦିନେ ସନ୍ଧ୍ୟା ବେଳେ ବୃତ୍ର ଓ ଇନ୍ଦ୍ର ସମୁଦ୍ର କୂଳରେ ବୁଲୁଥିଲେ । ବୃତ୍ରକୁ ଦିନରେ ବା ରାତିରେ କେହି ବଧ କରିପାରିବେ ନାହିଁ ବୋଲି ବୃତ୍ର ବର ପାଇଥିଲା । କିନ୍ତୁ ସନ୍ଧ୍ୟା ଦିନ ନୁହେଁ କି ରାତି ନୁହେଁ । ସେତିକିବେଳେ ଇନ୍ଦ୍ର ଯୋଗ-ମାୟାଙ୍କୁ ସ୍ମରଣ କଲେ । ନିଜ ବଜ୍ରକୁ ସମୁଦ୍ର ଫେଣରେ ଆବୃତ କରି ସେ ଉଦ୍ୟତ କଲେ । ବୃତ୍ର ବୁଝିପାରିଲା ନାହିଁ ଯେ ତାହା ବଜ୍ରାୟୁଧ । ନିଜର ସର୍ବଶକ୍ତି ଠୁଳ କରି ଇନ୍ଦ୍ର ତାଙ୍କ ଅସ୍ତ୍ର ବୃତ୍ର ଉପରେ ପ୍ରୟୋଗ କଲେ । ପର୍ବତ ବିଦୀର୍ଣ୍ଣ ହେଲା ଭଳି ବିଶାଳକାୟ ବୃତ୍ରର ବିନାଶ ହେଲା ।

ଶତ୍ରୁ ନିଧନ ଅନ୍ତେ ଇନ୍ଦ୍ର ଅମରାବତୀରେ ପୁନଃ ପ୍ରବେଶ କଲେ । ନନ୍ଦନବନରେ ସେ ଯୋଗମାୟାଙ୍କ ନିମନ୍ତେ ମନ୍ଦିର ପ୍ରତିଷ୍ଠା କରି ତାଙ୍କୁ ପୂଜା କଲେ । ବିଷ୍ଣୁଙ୍କୁ ଆରାଧନା କରି ତାଙ୍କ ପ୍ରତି ଗଭୀର କୃତଜ୍ଞତା ପ୍ରକାଶ କଲେ ।

କିନ୍ତୁ ମିତ୍ରଦ୍ରୋହ କରିଥିବା ହେତୁ ଇନ୍ଦ୍ରଙ୍କ



ମନ ଗ୍ଲାନିମୁକ୍ତ ହୋଇପାରିଲା ନାହିଁ ।

ତ୍ୱଷ୍ଟା ଯେତେବେଳେ ପୁଅର ମୃତ୍ୟୁ ସମ୍ବାଦ ଶୁଣିଲା, ସେତେବେଳେ ତା' ଦୁଃଖର ସୀମା ରହିଲା ନାହିଁ । ସେ ପୁଅର ଅନ୍ତ୍ୟେଷ୍ଟି କ୍ରିୟା ସମାପନ କରିସାରି ତା'ପରେ ବୃତ୍ର ସହ ବିଶ୍ୱାସଘାତକତା କରିଥିବା ହେତୁ ଇନ୍ଦ୍ର ଭୀଷଣ ଯନ୍ତ୍ରଣା ଭୋଗ କରିବେ ବୋଲି ଅଭିଶାପ ଦେଲା ।

ନିଜ କର୍ମରୁ ଇନ୍ଦ୍ରଙ୍କୁ ନିଷ୍କୃତି ମିଳିଲା ନାହିଁ । ବୃତ୍ରହତ୍ୟା ପରେ ପରେ ଇନ୍ଦ୍ର ନିସ୍ତେଜ ହୋଇଯିବାକୁ ଲାଗିଲେ । ଦେବଗଣ ବୃତ୍ରହତ୍ୟା ଦ୍ୱାରା ଉପକୃତ ହେଲେ ମଧ୍ୟ ଇନ୍ଦ୍ରଙ୍କ ପ୍ରତି ସେମାନଙ୍କର ଶ୍ରଦ୍ଧାଭାବ ରହିଲା ନାହିଁ । ମୁନିମାନେ ଇନ୍ଦ୍ର ବିଶ୍ୱାସଘାତକ ବୋଲି କହି ତାଙ୍କ ପ୍ରତି ତାଚ୍ଛଲ୍ୟ କଲେ ।

ଏଭଳି ପରିସ୍ଥିତିରେ ଇନ୍ଦ୍ର ସର୍ବଦା ବିମର୍ଷ ଭାବରେ ନିଜ ଘର ଭିତରେ କାଳାତିପାତ କରିବାକୁ ଲାଗିଲେ । ଦେବସଭା ଭିତରକୁ ଯିବାକୁ ତାଙ୍କର ଉତ୍ସାହ ରହିଲା ନାହିଁ । ଶଚୀଦେବୀ ପଚାରିଲେ, "ଶତ୍ରୁନିଧନ ପରେ ମଧ୍ୟ ଏପରି ଚିନ୍ତିତ ହେବାର କାରଣ କ'ଣ ? ଆଉ କେହି ଶତ୍ରୁ ଅଛି କି ?"

"ମୋର ଶତ୍ରୁଭୟ ନାହିଁ । କିନ୍ତୁ ନିଜ କୃତ ଅନ୍ୟାୟ ଯୋଗୁ ମୋର ତିଳେ ମଧ୍ୟ ସୁଖ ନାହିଁ । ନୃତ୍ୟଗୀତ, ସ୍ୱର୍ଗର ସବୁ ଆନନ୍ଦଦାୟକ ବ୍ୟବସ୍ଥା, ମୋତେ କେହି ଶାନ୍ତି ଦେଇପାରୁନାହାନ୍ତି ।" ଇନ୍ଦ୍ର କହିଲେ । ତା'ପରେ ଦିନେ ସେ ସମସ୍ତଙ୍କ ଅଗୋଚରରେ ପ୍ରାସାଦ ତ୍ୟାଗ କରି ମାନସରୋବରରେ ଯାଇ ପହଞ୍ଚିଲେ ଏବଂ ଗୋଟିଏ ପଦ୍ମବନ ଭିତରେ ଜଳସର୍ପ ରୂପେ ଆତ୍ମଗୋପନ କରି ରହିଲେ ।

ସଂସାରରେ ଅରାଜକତା ବ୍ୟାପିଲା । ଦୀର୍ଘକାଳ ଇନ୍ଦ୍ରଙ୍କର କୌଣସି ପତ୍ତା ନ ମିଳିବାରୁ ଦେବତା ଓ ମୁନିମାନେ ଇନ୍ଦ୍ରାସନରେ ବସିବା ନିମନ୍ତେ ଯୋଗ୍ୟତମ ବ୍ୟକ୍ତି କିଏ ତାହା ବିଚାର କଲେ । ରାଜା ନହୁଷଙ୍କୁ ମନୋନୀତ କରାଗଲା । କିନ୍ତୁ ସେ ଇନ୍ଦ୍ରାସନ ପାଇ ଶଚୀଦେବୀଙ୍କୁ ମଧ୍ୟ

ପାଇବା ନିମନ୍ତେ ଜିଗର କଲେ ।

ଦେବତାମାନେ ମହା ଅଡୁଆରେ ପଡ଼ିଲେ । ଶଚିଦେବୀ ଯାଇ ଦେବଗୁରୁ ବୃହସ୍ପତିଙ୍କୁ ନିଜ ବିପଦ କଥା ଜଣାଇଲେ । ବୃହସ୍ପତି ଗୋଟିଏ ଉପାୟ ବତାଇଦେଲେ ।

ଶଚିଦେବୀ ନହୁଷଙ୍କ ନିକଟକୁ ଖବର ଦେଲେ କି ସେ ନିଜ ସ୍ୱାମୀଙ୍କ ପ୍ରତ୍ୟାବର୍ତ୍ତନ କାମନା କରି ଏକ ଯଜ୍ଞ କରିବେ । ଯଦି ଯଜ୍ଞର ଫଳ କିଛି ନ ହେବ, ତେବେ ସେ ନହୁଷଙ୍କ ରାଣୀ ହୋଇଯିବେ ।

ନହୁଷ ଏ ପ୍ରସ୍ତାବରେ ରାଜି ହୋଇ ଅପେକ୍ଷା କଲେ ।

ଯଜ୍ଞ ଅନୁଷ୍ଠିତ ହେଲା । ତଥାପି ଇନ୍ଦ୍ର ପ୍ରତ୍ୟାବର୍ତ୍ତନ କଲେ ନାହିଁ । ଶଚିଦେବୀ ସେଇଠୁ ମହାଦେବୀଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ । ତାଙ୍କ ଆନ୍ତରିକ ପ୍ରାର୍ଥନାରେ ପ୍ରୀତ ହୋଇ ମହାଦେବୀ ତାଙ୍କ ଆଗରେ ଆବିର୍ଭୂତା ହେଲେ ଏବଂ ଇନ୍ଦ୍ରଙ୍କ ପାଖକୁ ତାଙ୍କୁ ନେଇଗଲେ । ଇନ୍ଦ୍ର ତାଙ୍କୁ କହିଲେ କି ସେ ନହୁଷଙ୍କୁ ଋଷିବାହିତ ସବାରିରେ ନିଜ ପାଖକୁ ଆସିବା ପାଇଁ ସର୍ତ୍ତ ଦିଅନ୍ତୁ ।

ପ୍ରାସାଦକୁ ଫେରି ଶଚିଦେବୀ ତାହା ହିଁ କଲେ । ନହୁଷ ଯେଉଁ ଋଷିମାନଙ୍କୁ ନିଜ ସବାରି ବହନ କରିବା କାମରେ ଲଗାଇଲେ, ତହିଁ ମଧ୍ୟରେ ଥିଲେ ଋଷି ଅଗସ୍ତ୍ୟ । ଅଗସ୍ତ୍ୟ ଅନ୍ୟମନସ୍କ ଭାବରେ ଚାଲୁଥାନ୍ତି । ରାଜା ଅଧୈର୍ଯ୍ୟ ହୋଇ ତାଙ୍କ ଦେହରେ ନିଜ ଗୋଡ଼ ବଜାଇଦେଇ 'ସର୍ପ ସର୍ପ' ବୋଲି କହିଲେ । 'ସର୍ପ' ଅର୍ଥ ଶୀଘ୍ର ଚାଲ ।

ଅଗସ୍ତ୍ୟ ହଠାତ୍ କ୍ରୁଦ୍ଧ ହୋଇ ଅଭିଶାପ ଦେଲେ, "ସର୍ପ ହୋଇଯାଅ !"

ସଙ୍ଗେ ସଙ୍ଗେ ନହୁଷ ସର୍ପରେ ପରିଣତ ହୋଇ ସ୍ୱର୍ଗପୁରୀରୁ ମର୍ତ୍ତ୍ୟକୁ ଖସିଆସିଲେ । କ୍ଷମତାମତ୍ତ ଅହଂକାରର ପରିଣାମ ଫଳିଲା ।





# ଯେସାକୁ ତେସା

ଧନଞ୍ଜୟ ଥିଲେ ଗାଁର ସବୁଠାରୁ ମାତବର ଲୋକ । ତାଙ୍କର ଖଣ୍ଡିଏ ବଡ଼ ଜମି ଥିଲା । ସେ ଜମି ପାଖକୁ ଲାଗିଥାଏ ଭୋଳାନାଥ ନାମକ କୃଷକର ଜମି । ଧନଞ୍ଜୟଙ୍କର ବହୁତ ଟଙ୍କା । ଭୋଳାନାଥର ଜମି ଖଣ୍ଡିକ ଉପରେ ତାଙ୍କର ଲୋଭ ଥାଏ ।

ସେ ବାରମ୍ବାର ଭୋଳାନାଥକୁ ତା' ଜମି-ଖଣ୍ଡିକ ତାଙ୍କୁ ବିକ୍ରି କରିଦେବାକୁ ପ୍ରବର୍ତ୍ତାଇଲେ । ସରସରିଆ ଜମିର ଯାହା ଦାମ୍, ତାହାଠାରୁ କିଛି ଅଧିକ ଦେବାକୁ ମଧ୍ୟ ସେ ପ୍ରସ୍ତୁତ ଥିଲେ । କିନ୍ତୁ ଭୋଳାନାଥ ଜମି ବିକିବାକୁ ନାସ୍ତି କରି-ଦେଲା । ଧନଞ୍ଜୟ ମନେ ମନେ ଭୋଳାନାଥ ଉପରେ ଭୀଷଣ ବିରକ୍ତ ହୋଇ ଥା'ନ୍ତି ।

ଧନଞ୍ଜୟ ଧନୀ ହୋଇଥିବାରୁ ତାଙ୍କ ପାଖରେ ଅନେକ ଖୋସାମତକାରୀ ଜମା ହେଉଥାନ୍ତି । ସେମାନେ ତାଙ୍କୁ ଖୁସୀ କରିବା ନିମନ୍ତେ ଭୋଳାନାଥ ବିରୁଦ୍ଧରେ ଗପୁଥାନ୍ତି । ଧନଞ୍ଜୟଙ୍କ ମନରେ କ୍ରମେ କ୍ରୋଧ ଅଧିକ ଅଧିକ ଜମାଟ ବାନ୍ଧୁଥାଏ । ଭୋଳାନାଥ ଜମି ହସ୍ତାନ୍ତର କରି-ବାକୁ ଅସମ୍ମତ ହେବା ଦ୍ୱାରା ସେ ନିଜ ସମ୍ମାନ ତଳେ ପଡ଼ିଗଲା ବୋଲି ମନେ କରୁଥାନ୍ତି । ସୁଯୋଗ ପାଇଲେ ଭୋଳାନାଥକୁ କିଛି ଶିକ୍ଷା ଦେବା ପାଇଁ ସେ ମନେ ମନେ ସ୍ଥିର କରିଥାନ୍ତି ।

ହଠାତ୍ ଭୋଳାନାଥ ମରିଗଲା । ତା' ସ୍ତ୍ରୀ ଦଶବର୍ଷର ପୁଅ ଗୋପାଳକୁ ନେଇ ମହା ଅଡ଼ୁଆରେ ପଡ଼ିଲା । ଶେଷକୁ ସେ ଧନଞ୍ଜୟ ପାଖକୁ ଯାଇ କହିଲା, "ଆପଣଙ୍କୁ ଅନୁରୋଧ, ଆପଣ ଆମର ଜମିଖଣ୍ଡିକ ନେଇ ଉଚିତ ମୂଲ୍ୟ ଦିଅନ୍ତୁ । ସେଥିରେ ଗୋପାଳ ପଢ଼ାପଢ଼ି କରିବ ।"

ଯଶବନ୍ତ



ସହ ମୁଁ ତୁମକୁ ସେ ଟଙ୍କା ଦେବ ।"

ଧନଞ୍ଜୟଙ୍କ ଭଳି ବିଶିଷ୍ଟଲୋକଙ୍କ ଶୁଭେଚ୍ଛାକୁ ଗୋପାଳର ମା' ବେଖାତର କରନ୍ତେ କିପରି ? ଧନଞ୍ଜୟଙ୍କର ବିପୁଳ ବିତ୍ତ । ସେ ଅଳ୍ପ କେତେ ଟଙ୍କା ରଖି ଲାଭବାନ୍ ହେବାକୁ ଚାହୁଁଥିବେ, ଗୋପାଳର ମା'ମୁଣ୍ଡକୁ ଏଭଳି ଧାରଣା ଆସିଲା ନାହିଁ । ସେ ଧରିନେଲେ ଯେ ତାଙ୍କର ଉପକାର ସକାଶେ ଧନଞ୍ଜୟ ଏ ପ୍ରସ୍ତାବ ଦେଉଛନ୍ତି ।

ଗୋପାଳର ମା' ଏ ପ୍ରସ୍ତାବରେ ସମ୍ମତ ହେଲେ । ଜମି ସେ ଧନଞ୍ଜୟଙ୍କୁ ହସ୍ତାନ୍ତର କରି-ଦେଲେ । ତାହା ଧନଞ୍ଜୟଙ୍କ ବଡ଼ ଜମି ସହ ସାମିଲ୍ ହୋଇଗଲା ।

"ବେଶ୍, ଭଲ କଥା ।" ଧନଞ୍ଜୟ ଉତ୍ସାହିତ ହୋଇ କହିଲେ । କ୍ରମେ ସେ ଗୋପାଳର ମା' ମନରେ ନିଜ ପ୍ରତି ଯଥେଷ୍ଟ ବିଶ୍ୱାସ ଜନ୍ମାଇ-ଦେଲେ ଓ ପଚାରିଲେ, "ତୁମେ ଟଙ୍କାତକ ନେଇ କରିବ କ'ଣ ?"

"କରଜ ଲଗାଇ କିଛି ସୁଧ ପାଇବି ।" ଗୋପାଳର ମା' କହିଲା ।

ଧନଞ୍ଜୟ ହସିଲେ ଓ କହିଲେ, "ସେ କାମ ସେତେ଼ ସହଜ ନୁହେଁ । ଲୋକେ ଟଙ୍କା ନେଇ ଫାଙ୍କି ଦେଲେ ତୁମେ କରିବ କ'ଣ ? ବରଂ ଟଙ୍କା ତୁମର ମୋ ପାଖରେ ଥାଉ । ଯେତେବେଳେ ତୁମର ଦରକାର ହେବ, ସୁଧ

କେତେବର୍ଷ ପରେ ଗୋପାଳର ମା' ଧନ-ଞ୍ଜୟଙ୍କୁ ଟଙ୍କା ମାଗିଲେ । ଧନଞ୍ଜୟ ଅବାକ୍ ହେବାର ଅଭିନୟ କରି କହିଲେ, "କି ଟଙ୍କା ? ତୁମେ କ'ଣ ଟଙ୍କା ନ ନେଇ ମୋତେ ମାଗଣା ଜମି ଦେଇଦେଇଥିଲ ? ଦୁନିଆରେ ଏକଥା କେହି ବିଶ୍ୱାସ କରିବ ?"

ପ୍ରଥମେ ଗୋପାଳର ମା' ଭାବିଲେ କି ଧନଞ୍ଜୟ ସବୁ ଭୁଲିଯାଇଛନ୍ତି । ସେ ବିନମ୍ର ଭାବରେ ତାଙ୍କୁ ତାଙ୍କ ଉପଦେଶ କଥା ମନେ ପକାଇଦେଲେ । କିନ୍ତୁ ଧନଞ୍ଜୟ ହସି ଉଠିଲେ ଓ କହିଲେ, "ଗୋପାଳବୋଉ ! ତୁମ ମୁଣ୍ଡ ବିଗିଡ଼ିଗଲଣି । ତୁମ ପ୍ରତି ଦୟା କରି ମୁଁ ଦୁଇ

ହଜାର ସ୍ଥଳେ ପାଞ୍ଚ ହଜାର ଦେଇଥିଲି ବୋଲି ମୋର ମନେ ପଡ଼ୁଛି । ବର୍ତ୍ତମାନ ତୁମେ କହୁଛ କି ଟଙ୍କା ପାଇନାହଁ । ଦୁନିଆରେ ଏପରି କେବେ ହୁଏ ? ତୁମ କଥା ବିଶ୍ୱାସ କଲି ଭଲି ପାଗଳ କିଏ ହୋଇପାରେ ? ଚୁପ୍‌ଚାପ୍ ଚାଲି-ଯାଅ । ଅଭାବ ପଡ଼ିଥିଲେ ମୁଁ ଦଶ କୋଡ଼ିଏ ଟଙ୍କା ଦାନ ଦେଉଛି, ନିଅ ।"

ଗୋପାଳର ମା' କାନ୍ଦପକାଇଲେ । ଘରକୁ ଆସି ସେ ଗୋପାଳକୁ ସବୁ କହିଲେ । ଗୋପାଳ ସ୍ତବ୍ଧ ହୋଇ ରହି ତା'ପରେ କହିଲା, "ସେ ଭାବିଛି ମିଥ୍ୟା ହାରି ଆମକୁ ଠକିଦେବ ! ବେଶ୍, ସେହି ଏକା ଅସ୍ତ୍ର ମୁଁ ତା' ଉପରେ ପ୍ରୟୋଗ କରିବି । ସେ ଥରେ ବୁଝୁ ।"

ଗୋପାଳର ସାଙ୍ଗ ଅନନ୍ତର ବାପା ସୁନାରି ଥିଲେ । ସେ ଧନଞ୍ଜୟଙ୍କୁ ଯେମିତି ହାଡ଼େ ହାଡ଼େ ଚିହ୍ନିଥିଲେ, ଗୋପାଳ ପ୍ରତି ବି ତାଙ୍କର ସେହି-ପରି ସ୍ନେହ ଥିଲା ।

ଗୋପାଳ ତାଙ୍କ ସହ ପରାମର୍ଶ କଲା । ତାଙ୍କଠାରୁ କିଛି ପୁରୁଣା ସୁନା ଗହଣା ନେଇ ସେଦିନ ସଞ୍ଜବେଳେ ଧନଞ୍ଜୟଙ୍କ ଘରେ ପହଞ୍ଚି କହିଲା, "ଆଜ୍ଞା, ଏଗୁଡ଼ିକ ମୋ ମା'ଙ୍କ ଗହଣା । ଏହାକୁ ରଖି ମୋତେ ପାଞ୍ଚଶହ ଟଙ୍କା ଦିଅନ୍ତୁ । ମୁଁ ପରେ ଟଙ୍କା ଦେଇ ମୁକୁଳାଇ ନେବି ।"

ସେତେବେଳେ ଗାଁର ବିଶିଷ୍ଟ ଲୋକମାନେ ସେଠାରେ ଥିଲେ । ପ୍ରତ୍ୟହ ସେତିକବେଳେ ସେଠାରେ ଏକଜ ହୋଇ ଗପସପ କରୁଥା'ନ୍ତି ।





"ଟଙ୍କା କ'ଣ କରିବ ?" ଧନଞ୍ଜୟ ତାକୁ ପଚାରିଲେ ।

"ସହରକୁ ଯାଇ କିଛି ବ୍ୟବସାୟ ପାଇଁ ଚେଷ୍ଟା କରିବି ।" ଗୋପାଳ ଉତ୍ତର ଦେଲା ।

"ବେଶ୍, ବେଶ୍ ଆମ ଗାଁର କୌଣସି ପୁଅ ଯାଇ ଉନ୍ନତି କରୁ ସେ ପାଇଁ ମୁଁ ସବୁମନ୍ତେ ସାହାଯ୍ୟ କରିବାକୁ ପ୍ରସ୍ତୁତ ।" ଧନଞ୍ଜୟ ସବୁ ସମକ୍ଷରେ ନିଜ ଉଦାରତା ପ୍ରକାଶ କଲେ ଓ ଟଙ୍କା ଦେଇଦେଲେ ।

ସେଇ ରାତିରେ ସେ ଅନନ୍ତର ବାପାଙ୍କୁ ଡକାଇ ଗହଣାତକ ଦେଖାଇଲେ । ସୁନାରି ଚମକିପଡ଼ି କହିଲେ, "ଆରେ ଏ ଗହଣା ଆପଣଙ୍କ ପାଖକୁ କିପରି ଆସିଲା ? ଏହା ଅନେକ ବର୍ଷ ତଳେ ଜମିଦାରଙ୍କ ସ୍ତ୍ରୀଙ୍କ ପାଇଁ ମୁଁ ଗଢ଼ାଇ ଦେଇଥିଲି । ଦୁଇଦିନ ତଳେ ସେ ଖବର ପଠାଇଛନ୍ତି କି ତାଙ୍କ ଘରୁ ଏସବୁ ଚୋରି ହୋଇଯାଇଛି । ମୋତେ ଗୋପନରେ ଲକ୍ଷ୍ୟ ରଖିବାକୁ କହିଛନ୍ତି । କେହି ସେ ଗହଣା ମୋତେ ଦେଖାଇବା ମାତ୍ରେ ତାଙ୍କୁ ଖବର ଦେବା କଥା !"

"ମଲା ସୁନାରିପୁଅ, ମଲା ! ଏବେ କରିବି କ'ଣ ?" ଧନଞ୍ଜୟ ଉତ୍କଣ୍ଠାଭରେ ପଚାରିଲା ।

"ଆପଣ ଯାହାଠାରୁ ଏହା ପାଇଛନ୍ତି, ତାକୁ ଫେରାଇଦିଅନ୍ତୁ । ଆପଣଙ୍କ ଘରେ ଏ ଜିନିଷ ରଖିବା ବିପଜ୍ଜନକ ।" ଏହା କହି ସୁନାରି ବିଦାୟ ନେଲେ ।

ଧନଞ୍ଜୟ ସଙ୍ଗେ ସଙ୍ଗେ ଗୋପାଳକୁ ଡକାଇ କହିଲେ, "ମୋର ଗହଣା ରଖିବାରେ ଅସୁବିଧା ଅଛି । ତୁମେ ନେଇଯାଅ ଓ ଟଙ୍କା ଦିଅ ।"

"ଆରେ, ଟଙ୍କାତକ ତ ମୁଁ ଜଣେ ବନ୍ଧୁ ହାତରେ ସହରକୁ ପଠାଇଦେଲି । ଆଚ୍ଛା, ମୁଁ ଦୁଇଦିନ ଭିତରେ ଫେରାଇ ଆଣୁଛି ।" ଗୋପାଳ କହିଲା । ଧନଞ୍ଜୟ କିନ୍ତୁ ଗହଣାତକ ଘରେ ରଖିବାକୁ ପ୍ରସ୍ତୁତ ନ ଥିଲେ । ଗୋପାଳ ଗହଣା ନେଇଗଲା ।

ଦୁଇଦିନ ପରେ ଧନଞ୍ଜୟ ଗାଁ ଲୋକଙ୍କ

ଗହଣରେ ଥିବା ବେଳେ ହଠାତ୍ ଗୋପାଳ ପହଞ୍ଚିଯାଇ କହିଲା, "ଦିଅନ୍ତୁ ଟଙ୍କା; ଗହଣାତକ ନିଅନ୍ତୁ ।"

"ଗହଣା ? ତୁମେ ସବୁ ନେଇଗଲ ?" ଧନଞ୍ଜୟ ପଚାରିଲେ ।

"ନେଇଗଲ ? ବିନା ଟଙ୍କାରେ ? କ'ଣ ହଜାର ହଜାର ଟଙ୍କାର ଗହଣା ଆପଣ ପାଞ୍ଚ-ଶହରେ ମାରିନେବେ ?" ବିସ୍ମୟ ଭାବରେ ଗୋପାଳ କହିଲା ।

ଗାଁ ଲୋକେ ପରସ୍ପର ଚୁହାଁଚୁହିଁ ହେଲେ । ଧନଞ୍ଜୟ ଭଲଲୋକ ନୁହେଁ ବୋଲି ସମସ୍ତେ ଜାଣିଥିଲେ । ଅତଏବ ସେମାନେ ଧରିନେଲେ ଧନଞ୍ଜୟ ମିଛ କହୁଛନ୍ତି ।

ସେତିକବେଳେ ସୁନାରି ସେଠାରେ ପହଞ୍ଚି-ଯାଇ କହିଲେ, "ପୁରୁଣା ଗହଣା ଭାଙ୍ଗି ନୂଆ କରିବାକୁ ସହଜରେ ହାତ ଯାଏ ନାହିଁ । ଯାହା-ହେଉ, ନୂଆତକ ଆପଣଙ୍କର ପସନ୍ଦ ହେଲା ତ ? ହଠାତ୍ ପଇସା ଦରକାର ପଡ଼ୁଛି । ମୋ ମଜୁରି ମିଳିଯିବ ?"

ଗାଁଲୋକେ ବୁଝିଗଲେ ଯେ, ଧନଞ୍ଜୟ ଗହଣା ଭାଙ୍ଗି ସେଥିରେ ନୂଆ ଗହଣା ଗଢ଼ି ସାରିଲେଣି ।

"ଧନଞ୍ଜୟ ବାବୁ, ଏହା ବଡ଼ ଅନ୍ୟାୟ । ଆପଣ ଯାହା କଲେ କଲେ, ଗହଣାର ଦାମ୍ ଦେଇଦିଅନ୍ତୁ ।" ଗାଁ ଲୋକେ କହିଲେ । ସୁନାରି ହିସାବ କରି ଜଣାଇଲେ ସେତିକ ଗହଣାର ଦାମ୍ ପାଞ୍ଚ ହଜାର ଟଙ୍କା ।

"ଆପଣ ଟଙ୍କା ନ ନେଇ ଗହଣା ଦେଇ-ଦେଲେ, ଏକଥା କେହି ବିଶ୍ୱାସ କରିବ ?" ଗୋପାଳ କହିଲା ।

ଧନଞ୍ଜୟଙ୍କୁ ସେ ଟଙ୍କା ଦେବାକୁ ପଡ଼ିଲା । ଗୋପାଳ ଟଙ୍କା ପାଇସାରିବା ପରେ ସୁନାରି ଧନଞ୍ଜୟଙ୍କ କାନରେ କହିଲା, "ପ୍ରକୃତରେ ବାବୁ ଏ ଟଙ୍କା ସେ ଜମିର ଦାମ୍, ବୁଝିଲେ ? ତେଣୁ ଆପଣ ଠକିଯାଉନାହାନ୍ତି ।"



## ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ ୨୫

### ପୁରସ୍କୃତ ପରିଚୟୋକ୍ତି ଜୁଲାଇ ୧୯୮୦ ସଂଖ୍ୟାରେ ପ୍ରକାଶ ପାଇବ







★ ଉଭୟ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ।

★ ମେ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।

★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ ୨୫.୦୦ ପୁରସ୍କାର ପଠାଯିବ ।

★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡ଼ରେ ଲେଖା ହୋଇ (ସେଥିରେ ଅନ୍ୟ କଥା ରହିବା ଅନୁଚିତ) ଜହ୍ନମାମୁଁ ଫଟୋ ପରିଚୟ ପ୍ରତିଯୋଗିତା, ଚନ୍ଦାମାମା ବିଲ୍ଡିଙ୍ଗସ୍, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ମାର୍ଚ୍ଚ ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : "ପାଳୁଆ ମୁଁ ବୁଣେ ପେଟ ପାଇଁ, ସଦା ଆନନ୍ଦ ମିଳଇ ମୋତେ ।"

ଦ୍ୱିତୀୟ ଫଟୋ : "ପଞ୍ଜୁରିମାଳରେ ପକ୍ଷୀମାନେ ରହି ଦୁଃଖ ନ କରିବେ କେତେ !"

ପୁରସ୍କାର ବିଜୟିନୀ : ଜ୍ୟୋତ୍ସ୍ନାରାଣୀ ପରିଡ଼ା, ଓଲଗଡ଼ା, ବାଲେଶ୍ୱର

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.

## ଜହ୍ନମାମୁଁର
## ପାଠକପାଠିକାଙ୍କ
## ନିମନ୍ତେ ଶୁଭସମ୍ବାଦ

## ଧୂମକେତୁ
(ରଙ୍ଗିନ ଚିତ୍ରସମ୍ବଳିତ ଧାରାବାହିକ କାହାଣୀ)

ଆଗାମୀ ଜୁଲାଇ ସଂଖ୍ୟାରୁ 'ଜହ୍ନମାମୁଁ'ରେ ଧାରାବାହିକ ଭାବରେ ପ୍ରକାଶିତ ହେବ "ଧୂମକେତୁ"।

ପଚିଶବର୍ଷ ତଳେ 'ଚନ୍ଦାମାମା'ରେ ପ୍ରକାଶିତ ହୋଇ ଏହି କାହାଣୀ ବିଶେଷ ଜନପ୍ରିୟତା ଅର୍ଜନ କରିଥିଲା। କାହାଣୀକୁ ଚିତ୍ରିତ କରିଥିଲେ ପରଲୋକଗତ ବିଶିଷ୍ଟ ଚିତ୍ରକାର 'ଚିତ୍ର'।

# ସ୍ୱୟମ୍ବର

ଶେଠ୍ ରତନ୍‌ଲାଲ୍‌ଙ୍କ ଦୁଇ ପୁଅ—ରାମ ଓ ଲକ୍ଷ୍ମଣ—ପରିକଳ୍ପିତ ଯୋଜନାଟି କାର୍ଯ୍ୟକାରୀ କରିବାକୁ ବାହାରି ପଡ଼ିଲେ ।

ଚାକର ରୂପେ ଦୁର୍ଗାଦେବୀଙ୍କ ଘରେ ସ୍ଥାନ ପାଇଲା ରାମ । ଅବିଳମ୍ବେ ସେ ଶାନ୍ତିର ହୃଦୟରେ ବି ନିଜ ପାଇଁ ସ୍ଥାନ କରିନେଲା । କ୍ରମେ ନିଜ କର୍ମନିଷ୍ଠା ଓ ବୁଦ୍ଧିମତ୍ତା ଦ୍ୱାରା ସେ ଯେପରି ଦୁର୍ଗାଦେବୀଙ୍କ ପାଇଁ ଅପରିହାର୍ଯ୍ୟ ହୋଇ ଉଠିଲା, ସେମିତି ନିଜର ସରଳତା ତଥା ସହାନୁଭୂତି ପାଇଁ ଶାନ୍ତିର ପ୍ରିୟ ହୋଇ ଉଠିଲା ।

ଦିନେ ଏମିତି ସମୟ ଆସିଲା, ଯେତେବେଳେ ସେ ଦୁର୍ଗାଦେବୀଙ୍କୁ କହିଦେଲା: ଶାନ୍ତିକୁ ତା' ସହ ବିବାହ କରିଦିଆ ହେଉ, ନହେଲେ ସେ ତାଙ୍କ କାମ ଛାଡ଼ି ଚାଲିଲା!

ଶାନ୍ତି ତ ଦୁର୍ଗାଦେବୀଙ୍କ ଆଖିରେ ଚାକରାଣୀ ଛଡ଼ା ଅଧିକ କିଛି ନ ଥିଲା! ଫଳରେ ଦୁର୍ଗାଦେବୀ ରାମ ସହ ତା'ର ବିବାହ ଦେଇଦେଲେ । ରାମକୁ ସେ ସହଜରେ ଛାଡ଼ନ୍ତେ କେମିତି!

ତେଣେ ଲକ୍ଷ୍ମଣ ରାଜକୁମାର ବୋଲାଇ ସେ ସହରରେ ଆସି ପହଞ୍ଚିଥାଏ । ତା' ବଦାନ୍ୟତା ସାଙ୍ଗକୁ ସୁଠାମ ବ୍ୟକ୍ତିତ୍ୱ ରୂପାର ମନ କିଣିନେଲା । ଗର୍ବିଣୀ ଦୁର୍ଗାଦେବୀଙ୍କ ପାଇଁ ବି ତାଙ୍କ ଦୁଲାଳୀ ରୂପା ପାଇଁ ତାହାଠୁଁ ଯୋଗ୍ୟ ବର ମିଳିବ କାହୁଁ? ମାଖନ୍‌ଲାଲ୍ ବାଧା ଦେବାକୁ ଚେଷ୍ଟା କରିବା ସତ୍ତ୍ୱେ ମହାଡ଼ମ୍ବରରେ ରୂପା ସହ ଲକ୍ଷ୍ମଣର ବିବାହ ହୋଇଗଲା ।

ଲକ୍ଷ୍ୟ ପୂରଣ ହେଲା । ଏଣିକି ଦୁଇଭାଇ କ'ଣ ନିଜ ନିଜ ପରିଚୟ ପ୍ରକାଶ କରିଦେବେ? ନା । ଅନ୍ତତଃ ଲକ୍ଷ୍ମଣ ପାଇଁ କାମ ଆହୁରି ବାକି ଅଛି । ରୂପା ଜୀବନର ବାସ୍ତବତାକୁ ଚିହ୍ନିବା ଚାହିଁ । ତା' ପ୍ରେମ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଲୋଡ଼ା । ତାହା କିପରି ହେବ?

—ବାରନ୍ତରେ





ବି. ନାଗୀରେଡ୍ଡୀଙ୍କ ନୂତନ ପାରିବାରିକ ଚିତ୍ର 

ବାପର ଋଣ ପରିଶୋଧ କରନ୍ତି!
ପୁଅ ପାଇଁ କର୍ତ୍ତବ୍ୟର ଆହ୍ୱାନ...
ପୁଅମାନେ କର୍ତ୍ତବ୍ୟପାଳନ କିପରି କରନ୍ତି!
ଦେଖନ୍ତୁ...



ବି. ନାଗିରେଡ୍ଡୀଙ୍କ ନୂତନ ପାରିବାରିକ ଚିତ୍ର

# ସ୍ୱୟମ୍ବର

ନିର୍ଦ୍ଦେଶନା: ପି. ସାମ୍ବଶିବ ରାଓ   ସଂଳାପ: ରାଜେନ୍ଦ୍ରସିଂହ ବେଦୀ   ଗୀତ: ଗୁଲଜାର   ସଂଗୀତ: ରାଜେଶ ରୋଶନ

[illegible]

ବିଜୟା ପ୍ରଡକସନସ କୃତ



ଏକ ପାରିବାରିକ ଚିତ୍ର— ପ୍ରକୃତରେ ଆପଣଙ୍କ ପାଇଁ!

SISIR-22-OR